

# ଆମ ଗାଆଁର
# ଚିତ୍ରକଳା

ବିନୋଦ ରାଉତରାୟ

# ଆମ ଗାଆଁର ଚିତ୍ରକଳା

ଅଧ୍ୟାପକ ବିନୋଦ ରାଉତରାୟ

ପ୍ରକାଶକ :

ଉତ୍କଳିକା

ବାଙ୍କାବଜାର, କଟକ-୭୫୩୦୦୨

ଆମ ଗାଆଁର ଚିତ୍ରକଳା

ଲେଖକ :
ଅଧ୍ୟାପକ ବିନୋଦ ରାଉତରାୟ

ପ୍ରକାଶକ :
ଉତ୍କଳିକା
ବାଙ୍କାବଜାର, କଟକ-୨

ପ୍ରଥମ ସଂସ୍କରଣ : ୧୯୯୨

ମୁଦ୍ରଣ :
ରାଉତରାୟ ପ୍ରେସ
ରାଣୀହାଟ, କଟକ-୧

ମୂଲ୍ୟ :
କୋଡ଼ିଏ ଟଙ୍କା ମାତ୍ର

AMA GANRA CHITRAKALA

by :
Binod Routray

Publisher :
Utkalika
Banka Bazar, Cuttack-2

Printed by :
Routray Press
Ranihat, Cuttack-1

Price :
Rupees Twenty only



## ରଚନା ସୂଚୀ—







# ମଣ୍ଡନ କଳାର ମୂଳ ସୂତ୍ର

ମଣିଷ ତାର ପାରିପାର୍ଶ୍ୱିକ ପରିବେଶକୁ ସୁନ୍ଦର ଓ ରୁଚିପୂର୍ଣ୍ଣ କରିବା ପାଇଁ ଗୁଣା ଅଧିକେ ଚେଷ୍ଟା କରିଥାଏ । ଏହା ତାର ସହଜାତ ପ୍ରବୃତ୍ତି । ଏଥିପାଇଁ ସେ ମଣ୍ଡନକଳାର ଆଶ୍ରୟ ନେଇ ଥାଏ । ଝୋଟି-ଚିତା, ମୁରୁଜ, ଦେହରେ କୁଟାଇ ଚିତା, ଗହଣା, ଗାଲିଚା, ଘରଦାଣ୍ଡି ଚିତ୍ରଣ ଓ ଅନ୍ୟାନ୍ୟ ଦ୍ରବ୍ୟ ଉପରେ ଅଙ୍କନ ନୈପୁଣ୍ୟ ଦ୍ୱାରା ଯେଉଁ ମାନସିକ ବୃତ୍ତିର ସମ୍ମତ ( Rational ) ଅଳଂକରଣ ବା ମଣ୍ଡନ କରାଯାଏ ତାହାକୁ ମଣ୍ଡନକଳା ( Design କହନ୍ତି । ଚିତ୍ରାଙ୍କନ କରିବା ପାଇଁ ଅନେକ ସମୟରେ ପ୍ରକୃତି ନିକଟରୁ ପାଠ ଗ୍ରହଣ କରିବାକୁ ହୋଇଥାଏ । ଏହା ଦ୍ୱାରା ବିଭିନ୍ନ ବିଷୟବସ୍ତୁର ପ୍ରାକୃତିକ ଗଠଣ, ରୂପ, ଗତି ଭଙ୍ଗୀ ସଂପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରାଯାଏ । କିନ୍ତୁ ଅଳଂକରଣ ବା ମଣ୍ଡନ କଳାରେ ପ୍ରତ୍ୟେକ ବସ୍ତୁ ଉପରେ ଏକ କାଳ୍ପନିକ ଛନ୍ଦର ଆରୋପ କରାଯାଏ । ଏହା କେତେବେଳେ ପ୍ରକୃତିକୁ ଆଶ୍ରା କରିଥାଏ, କେତେବେଳେ ମଧ୍ୟ ସଂପୂର୍ଣ୍ଣ କାଳ୍ପନିକ ହୋଇ ଥାଏ । ଏହି ଛନ୍ଦ ବିଭିନ୍ନ ଯୁଗରେ ଓ ବିଭିନ୍ନ ଦେଶରେ କ୍ରମିକ ବିକାଶ ଲାଭ କରିଛି । ଯାହା ଦ୍ୱାରା ସହଜରେ ଏହି ମଣ୍ଡନ କଳା ସଂପର୍କରେ ଧାରଣା କରି ହେବ, ତାହାହିଁ ସୂଚାଇ ଦେବା ଏ ପ୍ରବନ୍ଧର ମୁଖ୍ୟ ଉଦ୍ଦେଶ୍ୟ ।

ଧର୍ମଚକ୍ର, ଚକ୍ରଯୁକ୍ତ ସ୍ତମ୍ଭପଦ, ସ୍ତୁପ ଓ ଚରଣ ଚିହ୍ନ ଇତ୍ୟାଦି ନେଇ ସଙ୍କେତର ଅବଶେଷ ମାତ୍ର । କେଉଁଠି କେଉଁଠି ଚକ୍ର ଉପରେ ତ୍ରିଶୂଳ କିମ୍ବା ଆଉ କେଉଁଠି ତିନିଗୋଟି ପଦ୍ମ ଦ୍ୱାରା ବୁଦ୍ଧ ବା ନିରନ୍ତର ଧାରଣା ଦିଆଯାଉଥିଲା । ପରେ ଯେତେବେଳେ ବୁଦ୍ଧ ମୂର୍ତ୍ତି ନିର୍ମାଣ କରାଗଲା, ତାହାକୁ ପଦ୍ମର ମଧ୍ୟମଣି ବା ବରାଟକ କୁହାଗଲେ । ଯେଉଁ ଦୃଷ୍ଟିରୁ ଦେଖିଲେ ଗୋଟିଏ ବରାଟକର ବାହ୍ୟ ଆକୃତି ମଧ୍ୟରେ ଧ୍ୟାନ ଗମ୍ଭୀର ବୁଦ୍ଧ ମୂର୍ତ୍ତିର ସମସ୍ତ ଅଂଶର ବିଭାଜନ କରାଯାଇଛି । ଏଣୁ ବରାଟକଟି ଏହାର ବାହ୍ୟ ଛନ୍ଦ ବା ବାହାରର ଗଢ଼ଣ । ଅନ୍ୟ ଦିଗରୁ ଦେଖିଲେ ଧ୍ୟାନ ଗମ୍ଭୀର ବୁଦ୍ଧମୂର୍ତ୍ତିକୁ ନିବାତ, ନିଷ୍କମ୍ପ, ନିର୍ଧୂମ ପ୍ରଦୀପ-ଶିଖା ଯେଉଁଭଳି, ନିଶ୍ଚଳ ଚେତନାର ବିଗ୍ରହ, ଧ୍ୟାନ ମୌନ ବୁଦ୍ଧମୂର୍ତ୍ତିର ଅନ୍ତର୍ନିହିତ ଛନ୍ଦ ତାର ଅନୁରୂପ । ଏହାହିଁ ହେଉଛି ଭିତରର ଶୃଙ୍ଖଳା । ଶିଳ୍ପକଳାରେ ରୂପ ଓ ଗୁଣର ତାତ୍ପର୍ଯ୍ୟ । ଏଣୁ ପ୍ରତ୍ୟେକ ରୂପ ଯେଉଁପରି ବାହାରର ନିର୍ଦ୍ଦିଷ୍ଟ ସୀମାରେଖା ମଧ୍ୟରେ ଆବଦ୍ଧ, ସେହିପରି ଭିତରର ଗୁଣ ଯଥାର୍ଥ ଶୃଙ୍ଖଳା ଦ୍ୱାରା ଉଦ୍ଭାସିତ । ଦୁଦୁରାଫୁଲିଆ ପିକଦାନି, କରମଙ୍ଗିଆ ଗଡ଼ୁ, ରସୁଣିଆ ତାଡ଼, ହରଡ଼ାକଣ୍ଠି ମାଳ, ହରଡ଼ା-ଫାଳ ମାଳ ପ୍ରଭୃତି କହିବା ଦ୍ୱାରା ରୂପର ବାହ୍ୟ ଆକୃତି ସମ୍ପର୍କରେ ଏକ ସ୍ୱଚ୍ଛ ଧାରଣା ଆଖି ଆଗରେ ନାଚିଉଠେ । ମହତାପାନ, ଚନ୍ଦ୍ରମୁଖି-ପାଟ, ଭୋଲେଇ ଖଟ, ଯାଳିଆଳି କବାଟ ଇତ୍ୟାଦିର ବ୍ୟଞ୍ଜନା ଯୋଗେ ରୂପର ଅନ୍ତର୍ନିହିତ ଗୁଣ ପ୍ରକାଶିତ ହୁଏ । ଲୋକ ଗୀତରେ ଅଛି—

"ରସୁଣିଆ ଯେ ତାଡ଼ କାଢ଼ିଣ ଥୋଇ
ପିନ୍ଧିଣ ବାଜୁ ଯାନ୍ତି ହାତ ହଲାଇ ।"

ସହିତ

"ମହତା ପାନରେ ଲୋ ଏ କଳା ଚୂନ
ବୋହୂଙ୍କ ପାନ ଖିଆ କଳା ଉଛନ୍ନ ।"

( ପଲ୍ଲୀ ପୁଷ୍ପ )

ମଣ୍ଡନକଳା ଗତ ମୁଦ୍ରାର (Ornamental motif) ସ୍ୱତନ୍ତ୍ର ଗତି ଓ ଭଙ୍ଗୀ ଅଛି । ଯେଉଁ କ୍ଷେତ୍ର ବା ବସ୍ତୁ ଉପରେ ମଣ୍ଡଣି କରାଯାଇ-ଥାଏ ତାହାକୁ ମନାଇଲା ଭଳି ସୃଷ୍ଟି କରାଯାଇ ଥାଏ । ଏଠାରେ ବସ୍ତୁର ରୂପ ଓ ପରିବେଶକୁ ପ୍ରଥମେ ମାନ ଦେବାକୁ ହୋଇଥାଏ । ଏହା ତାହାର ବାହାରର ଛନ୍ଦ । ତାର ପର ଭିତରର ଛନ୍ଦକୁ ଯଥାର୍ଥ ଭାବରେ ବିଭକ୍ତ କରିବାକୁ ହୁଏ । ଭିନ୍ନ ଭିନ୍ନ ଅଂଶରେ ଭିନ୍ନ ଭିନ୍ନ ମୁଦ୍ରା ଯୋଗ କରି ବସ୍ତୁକୁ ଶ୍ରୀମନ୍ତ କରାଯାଏ । ଏଥିରେ ଅଂକିତ ବସ୍ତୁ ବା ଉପମିତ ବସ୍ତୁର ମୂଳରୂପରେ ଆଶାତୀତ ପରିବର୍ତ୍ତନ ମଧ୍ୟ ଘଟେ । ସ୍ଥଳ ବିଶେଷରେ କେତେକ ଅଂଶ ମଧ୍ୟ ସଂପୂର୍ଣ୍ଣ ବାଦ ଦିଆଯାଏ । ପୁଣି ଆବଶ୍ୟକ ଥିଲେ ଉପମାନ ଠାରୁ କେତେକ ନୂତନ କିମ୍ବା ନିରର୍ଥକ ମଣ୍ଡଣି ଉପମିତ ସହିତ ମିଶାଇ ଦେବାକୁ ହୁଏ । ଏଣୁ ପ୍ରତ୍ୟେକ ବସ୍ତୁ ସମ୍ପର୍କରେ ସୂକ୍ଷ୍ମାତି ସୂକ୍ଷ୍ମ ଭେଦଜ୍ଞାନ ଆୟତ୍ତାଧୀନ ନ ଥିଲେ ମଣ୍ଡନ ଶିଳ୍ପରେ ତାହାକୁ ଅନୁସରଣ କରିବା ବିଡମ୍ବନା ମାତ୍ର । ମୂଳେ ପଦେ ପତନର ଭୟ ରହିଛି । ତାଳଗଛ, ଗୁଆଗଛ, ଖଜୁରୀଗଛ ଓ ନଡ଼ିଆ-ଗଛର ପ୍ରଗତିଛନ୍ଦ ବା ଅନ୍ତର୍ନିହିତ ଛନ୍ଦ ଗୋଟିଏ ପ୍ରକାରର । ସେହିପରି ମୟୂର ଓ କୁକୁଡା କିମ୍ବା ଶାଳପତ୍ର ଓ ବଟପତ୍ରର ଆକୃତି ଓ ପ୍ରକୃତି ପ୍ରାୟ ଗୋଟିଏ ଧରଣର । ଲିପି ଶିଳ୍ପ କ୍ଷେତ୍ରରେ 'ତ' ଓ 'ଡ' କିମ୍ବା 'ଦ' ଓ 'ବ' ର ଗଠନ ଏକପ୍ରକାର । ସାମାନ୍ୟ ମାତ୍ର ପାର୍ଥକ୍ୟରେ ଏହି ଅକ୍ଷର ଗୁଡିକର ସ୍ୱାତନ୍ତ୍ର ରକ୍ଷା କରାଯାଇ ଥାଏ । ଏଣୁ ଏଗୁଡିକର ସ୍ୱାତନ୍ତ୍ର୍ୟ ଓ ପାର୍ଥକ୍ୟ ସମ୍ପର୍କରେ ନିର୍ଭୁଲ ଧାରଣା ନ ଥିଲେ, ମଣ୍ଡନ-କଳାରେ ପ୍ରତ୍ୟେକ ଗୋଟିଏ ଗୋଟିଏ ଧରଣର ହୋଇପିବାର ସମ୍ଭାବନା ଅଛି । ଅବିକଳ ପ୍ରତିରୂପ ବା ଅନୁକୃତ ଚିତ୍ର ଓ ମୂର୍ତ୍ତି ନିର୍ମାଣ କ୍ଷେତ୍ରରେ ଏହା ସମ୍ଭବ ନୁହେଁ । ସେଠାରେ ସ୍ୱାଭାବିକ ତାର ସ୍ଥାନ ଉଚରେ । ଯେଉଁ ଜାଣିସ୍ଥ ଶିଳ୍ପ ଉପରୋକ୍ତ ପଦ୍ଧତିର ଯେତିକି ନିକଟବର୍ତ୍ତୀ, ତାହା ସେହି ପରିମାଣରେ ଆଳଙ୍କାରିକ । ପାରିଜାତକ ଏକ ସ୍ୱର୍ଗୀୟ କୁସୁମ । ତାହାର ସ୍ୱରୂପ କେହି କେବେ ହେଲେ ଦେଖି ନାହାନ୍ତି । ପ୍ରତ୍ୟେକ ବ୍ୟକ୍ତିର ମନରେ ଏହି ଦେବ ଯୋଗ୍ୟ କୁସୁମର

ଯଥାର୍ଥ ଧାରଣା ଅଛି । ମଣ୍ଡନକଳା କ୍ଷେତ୍ରରେ ପାରିଜାତ କୁସୁମ ଅଙ୍କନ କରିବା ସମ୍ଭବ । ପ୍ରତିରୂପ ବା ପ୍ରତିକୃତି ନିର୍ମାଣ କ୍ଷେତ୍ରରେ ତାହା ସମ୍ପୂର୍ଣ୍ଣ ସମ୍ଭବ ନୁହେଁ ।

ମଣ୍ଡନକଳାର ଚର୍ଚ୍ଚା ଦ୍ୱାରା ଯେଉଁପରି ଯଥୋଚିତ ଛନ୍ଦ ଜ୍ଞାନ ସମ୍ବନ୍ଧରେ ଧାରଣା ହୁଏ, ସେହିପରି ମଧ୍ୟ ସମତା ରକ୍ଷା କରିବାର ଦୃଷ୍ଟି ଆୟତ୍ତ ହୁଏ । ଏଣୁ ଏହାକୁ କଳା ଶିକ୍ଷାର ବୃହତ୍ତର କ୍ଷେତ୍ରରେ ସର୍ବଦା ପରିପୂରକ ରୂପ ଗ୍ରହଣ କରାଯାଇ ଥାଏ । ସମତାରକ୍ଷା ଦ୍ୱାରା ଆଳଙ୍କାରିକ ରଚନାର ଓଜନ (Balance) ସହଜରେ ରକ୍ଷା କରାଯାଏ । ଗୋଟିଏ ପ୍ରକାର ରେଖାର ଭଙ୍ଗୀକୁ ପୁନଃ ପୁନଃ ପ୍ରୟୋଗ କରି ମଣ୍ଡିତ କରାଯାଇ ପାରେ । ଜ୍ୟାମିତିକ ଅଳଙ୍କରଣ କ୍ଷେତ୍ରରେ ଏହିଭଳି ପନ୍ଥା ସର୍ବତ୍ର ଅନୁସରଣ କରାଯାଇ ଥାଏ । ଏହାକୁ ପ୍ରଣାଳୀ ସଙ୍ଗତ ଉପାୟରେ ସମତାରକ୍ଷା (Formal Balance) କହନ୍ତି । ଗୋଟିଏ ପ୍ରକାରର ନମୁନା ନକ୍ସା (Pattern) ତିଆରି କରି ତାହାକୁ ପାଖକୁ ପାଖ ସଜାଇ ଦେଲେ ପ୍ରଣାଳୀ ସଙ୍ଗତ ଉପାୟରେ ସମତା ରକ୍ଷା କରାଯାଇ ପାରିବ । କିନ୍ତୁ ଅନେକ ସମୟରେ ଏହା ଅତ୍ୟଧିକ ଗାଣିତିକ ହୋଇ-ଯାଉଥିବାରୁ ଚକ୍ଷୁଶୂଳ ହୋଇ ଥାଏ । ସେଥିପାଇଁ କେହି କେହି ଅଙ୍କନରେ ପ୍ରଣାଳୀ ସଙ୍ଗତ ସମତା ରକ୍ଷା କରିଥିଲେ ମଧ୍ୟ ବର୍ଣ୍ଣ ପ୍ରୟୋଗ କ୍ଷେତ୍ରରେ ନୂତନତା ପ୍ରତିପାଦିତ କରାଇଛନ୍ତି । ବିଷମ ଅଳଙ୍କରଣରେ କଳ୍ପନା କରି କେତେକ କ୍ଷେତ୍ରରେ ରୀତି ବହିର୍ଭୂତ ସମତା (In for-mal Balance) ରକ୍ଷା କରାଯାଏ । ଏଥିରେ ଚିତ୍ରର ଓଜନକୁ ହିଁ ଦେଉଛି ପ୍ରାଣ ସ୍ୱରୂପ । ରୀତି ବହିର୍ଭୂତ ସମତା ରକ୍ଷା କରିବା ପାଇଁ ବହୁ କ୍ଷେତ୍ରରେ ଯଥୋଚିତ ରେଖାବିନ୍ୟାସ, ଆଲୋକ ଛାୟା, ବର୍ଣ୍ଣ ବିନ୍ୟାସ ଓ ଛନ୍ଦୋବେଗର ହ୍ରାସ ଓ ବୃଦ୍ଧି ଦ୍ୱାରା ଶିଳ୍ପର ଉପଯୁକ୍ତ ତାଳ ନିର୍ଦ୍ଦିଷ୍ଟ କରାଯାଇ ଥାଏ ।

ବୁଢ଼ୀ ଅସୁରୁଣୀ ଗଳ୍ପ ଶୁଣିବା ଦ୍ୱାରା ପିଲାମାନଙ୍କର କଳ୍ପନାଶକ୍ତି ଯେଉଁପରି ସୁଦୂର ପ୍ରସାରୀ ହୋଇ ପାରେ, ମଣ୍ଡନକଳା ଶିକ୍ଷା ଦ୍ୱାରା

ସେହିପରି କଳ୍ପନା ଶକ୍ତିର ଚୂଡ଼ାନ୍ତ ବିକାଶ ଘଟିଥାଏ । ଏହା ବ୍ୟକ୍ତିର ମନ ମଧ୍ୟରେ ନକ୍ସା ଅଙ୍କନର ସ୍ୱାଭାବିକ ଧାରଣା ଜନ୍ମେ । ଏହି ଧାରଣା କ୍ରମେ ପୁଷ୍ଟିତ ଓ ପଲ୍ଲବିତ ହୋଇ ପରବର୍ତ୍ତୀ କାଳରେ ଚିତ୍ରାଙ୍କନର ପଦ୍ଧତିକୁ ଶ୍ରୀମନ୍ତ କରେ । ବିଦ୍ୟାଳୟ ଗୁଡିକରେ ଛୋଟ ଛୋଟ ପିଲଙ୍କୁ ଛବି ରଚନାର ମୌଳିକ ସମସ୍ୟାଗୁଡିକ ସଂପର୍କରେ ଧାରଣା ଦେବା ଆଦୌ ସହଜ କଥା ନୁହେଁ । କିନ୍ତୁ ମଣ୍ଡନକଳା ଶିକ୍ଷା ଫଳରେ ସେମାନେ ଉକ୍ତ ଧାରଣାକୁ ସ୍ୱତଃ ସ୍ଫୂର୍ତ୍ତ ଭାବରେ ଅର୍ଜନ କରିଥାନ୍ତି । ପ୍ରଣାଳୀ ସଙ୍ଗତ ସମତା ରକ୍ଷା କରିବା ପାଇଁ ପିଲମାନଙ୍କୁ ଜ୍ୟାମିତିକ ଯନ୍ତ୍ରପାତିର ବିନା ସାହାଯ୍ୟରେ କାର୍ଯ୍ୟ କଲେ ସେମାନଙ୍କର ଦୃଷ୍ଟି ଶକ୍ତି ଦୃଢ଼ ଓ ପ୍ରମାଦଶୂନ୍ୟ ହୁଏ । ଆମର ଗ୍ରାମାଞ୍ଚଳରେ ଯେତେ-ଯେତେ ମଣ୍ଡନକଳା କରାଯାଏ ତାହା କେବଳ ଚତ୍ୱର ମାଟିରେ ବା ଅଗଣର ମାଟିରେ ହିଁ ଅଙ୍କନ କରାଯାଏ । ଏହା ହିଁ ଲୋକ କଳାର ଗୌରବ ।



—※—



# ଆଦିବାସୀମାନଙ୍କର ଚିତ୍ର ସଂପଦ

ଓଡ଼ିଶାର ନିବିଡ଼ ଅରଣ୍ୟ ଓ ପାହାଡ଼ ଅଞ୍ଚଳରେ ବହୁ ପ୍ରାଚୀନ କାଳରୁ ଆଦିମ ଅଧିବାସୀମାନେ ବାସ କରୁଛନ୍ତି । ଓଡ଼ିଶାର କଳା ଓ ସଂସ୍କୃତିର ଇତିହାସକୁ ଏହି ଆଦିବାସୀମାନଙ୍କର ଅବଦାନ ଆଦୌ ନ୍ୟୂନ ନୁହେଁ । ଓଡ଼ିଶାର ଦେବତା ଜଗନ୍ନାଥ । ଓଡ଼ିଆମାନଙ୍କର ଧର୍ମ ଜଗନ୍ନାଥ ଧର୍ମ । ଜଗନ୍ନାଥ ଦେଶର ଲୋକ ଭାବରେ ଓଡ଼ିଆମାନେ ଭିନ୍ନଦେଶରେ ପରିଚିତ କିନ୍ତୁ ଦେଖିବାକୁ ଗଲେ ଆଦିମ ଅଧିବାସୀ ଶବର ମାନଙ୍କର ଦେବତା ନୀଳମାଧବ ହିଁ ପରବର୍ତ୍ତୀ କାଳରେ ଜଗନ୍ନାଥ ରୂପରେ ପୂଜା ପାଇ ଆସୁଛନ୍ତି । ଶବର ଦୁହିତା ଲଳିତା କେବଳ ବ୍ରାହ୍ମଣ ସନ୍ତାନ ବିଦ୍ୟାପତିଙ୍କୁ ବିବାହ କରି ନାହିଁ—ଏଠାରେ ଆର୍ଯ୍ୟ ସଭ୍ୟତା ଓ ସଂସ୍କୃତି ସହିତ ଅନାର୍ଯ୍ୟଙ୍କର ସଭ୍ୟତା ଓ ସଂସ୍କୃତିର ମିଳନ ମଧ୍ୟ ସମ୍ଭବ ହୋଇଛି । ଏପରି ସ୍ଥଳେ ଘନଜଙ୍ଗଲ ଅନ୍ତରାଳରେ ବାସ କରୁଥିବା ଆଦିମତମ ଅଧିବାସୀମାନଙ୍କର ସାଂସ୍କୃତିକ ବିକାଶ ସହିତ ଓଡ଼ିଆ ଜାତିର ଆଚାର, ବ୍ୟବହାର ଓ ଲୋକକଳାର ନିବିଡ଼ ସଂପର୍କ ରହିଛି ବୋଲି ନିଶ୍ଚିତ ରୂପେ ଅନୁମାନ କରିଯାଏ ।

ହିସାବ ନେବାରେ ଜଣାଯାଏ ଯେ ସମଗ୍ର ଓଡ଼ିଶାରେ ପ୍ରାୟ ୯୬ ଗୋଟି ଆଦିବାସୀ ସମ୍ପ୍ରଦାୟ ବାସ କରନ୍ତି । ସେମାନଙ୍କ ମଧ୍ୟରୁ ହୋ, ଗଣ୍ଡ, ମୁଣ୍ଡ, ସାନ୍ତାଳ, ଶବର, ଗାଦବା, କନ୍ଧ, ଜୁଆଙ୍ଗ, କେନ୍ଦୁ, ଭୂମିଜ ଓ ପରଜା ପ୍ରଭୃତି ସମ୍ପ୍ରଦାୟ ପ୍ରଧାନ । ଆଧୁନିକ ଶିକ୍ଷା ଓ ସଭ୍ୟତାରୁ ବଞ୍ଚିତ ହୋଇ ସେମାନେ ଅତ୍ୟନ୍ତ ଅବହେଳିତ ଭାବରେ ବାସ କରୁଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ଏକ ସ୍ୱତନ୍ତ୍ର ରୁଚି ଓ ସୌନ୍ଦର୍ଯ୍ୟାନୁଭୂତି ବଞ୍ଚି ରହିଛି । ଏହା ଆର୍ଯ୍ୟମାନଙ୍କର ଠାରୁ କୌଣସି ଗୁଣରେ ନ୍ୟୁନ ନୁହେଁ । କିଳା ଏଭଳି ଏକ ପଦାର୍ଥ ଯେଉଁଥିରୁ ସମଗ୍ର ଜାତିର ସ୍ୱଚ୍ଛ ପ୍ରତିବିମ୍ବ କଳନା କରାଯାଇ ପାରିବ । ଏଣୁ ଆଦିବାସୀମାନଙ୍କର ସମାଜର ପ୍ରକୃତ ରୂପ ଉଦ୍‌ଘାଟନ କରିବାକୁ ଗଲେ ସେମାନଙ୍କର ଗୀତ, ନାଚ ଓ ଚିତ୍ର ପ୍ରଭୃତିକୁ ଶ୍ରଦ୍ଧାର ସହିତ ଅଧ୍ୟୟନ ଓ ଅନୁଧ୍ୟାନ କରାଯିବା ଉଚିତ । ଗୋଟିଏ ବାକ୍ୟରେ କହିବାକୁ ଗଲେ ସେମାନଙ୍କର ଆଡ଼ମ୍ବରହୀନ ଜୀବନଯାତ୍ରା, ସହଜ ଓ ସ୍ୱଚ୍ଛନ୍ଦ ଅଭିବ୍ୟକ୍ତି, ଧର୍ମ ବିଶ୍ୱାସ, ସାହସିକତା ଓ ସାଧୁତା ସେମାନଙ୍କ ଚିତ୍ରକଳାକୁ ଅନ୍ତଃସାର ସମୃଦ୍ଧ କରିଛି । ବିଶ୍ଳେଷଣ ଦୃଷ୍ଟିର ଐଶ୍ୱର୍ଯ୍ୟ ନିରାଭରଣ ସାବଲୀଳତା, ସ୍ପଷ୍ଟ ଓ ସରଳ ମଣ୍ଡନ ନୈପୁଣ୍ୟ ଦ୍ୱାରା ସେମାନଙ୍କର ଚିତ୍ର ଓ ଶିଳ୍ପ ବିଶେଷ ଭାବରେ ଶ୍ରୀବର୍ଦ୍ଧିତ ହୋଇଛି । ଆଦିବାସୀମାନଙ୍କ ଚିତ୍ରଣ ରୀତିର ପ୍ରଧାନ ଗୁଣ ହେଉଛି, ଶୁଦ୍ଧ ଜ୍ୟାମିତିକ ନକ୍‌ସା, ବସ୍ତୁର ସହଜ ଓ ସାବଲୀଳ ଗଢ଼ଣ ଓ ମୌଳିକ ବର୍ଣ୍ଣର ସାମଞ୍ଜସ୍ୟ । ସାଧାରଣତଃ ସେମାନଙ୍କର ଚିତ୍ର ସମସ୍ତ ବାହୁଲ୍ୟବର୍ଜିତ ଓ ନିରାଭରଣ, ଏଣୁ ସେଥିରେ ବଳିଷ୍ଠ ହୃଦୟାବେଗ, ସ୍ୱତଃସ୍ଫୂର୍ତ୍ତ ଭାବରେ ପ୍ରକାଶିତ ହୋଇଥାଏ । ରୂପ ବା ଚର୍ମର ସ୍ପଷ୍ଟ ରଙ୍ଗ ଓ ସହଜ ପ୍ରକାଶ ଘଟୁଥିବାରୁ ତାହା ଜ୍ୟାମିତିକ ରେଖାର ସ୍ୱଳ୍ପତା ମଧ୍ୟରେ ହିଁ ବ୍ୟକ୍ତ କରାଯାଇ ଥାଏ । ଅନେକାଂଶରେ ଏହା ଶିଶୁମାନଙ୍କ ଦ୍ୱାରା ଅଙ୍କିତ ଚିତ୍ରକଳାର ଅନୁରୂପ । ସେଥିପାଇଁ କଳାସମୀକ୍ଷକ ROGER FRY କହିଛନ୍ତି ଯେ—

"Such in brief out line, are some of the main principles of drawing both among primitive peoples and among our own Children"—(Vision and Design, page-78)



ଆଦିବାସୀମାନେ ମୁଖ୍ୟତଃ ତିନିଗୋଟି ଦିଗରୁ ଚିତ୍ରାଙ୍କନ କରିଥାନ୍ତି । ସେମାନେ ପ୍ରଥମରୁ ପ୍ରତ୍ୟେକ ବ୍ୟବହାରିକ ବସ୍ତୁକୁ ସୌନ୍ଦର୍ଯ୍ୟ-ମଣ୍ଡିତ କରିବା ପାଇଁ ଚେଷ୍ଟା କରିଥାନ୍ତି । ଏ କ୍ଷେତ୍ରରେ ସୌନ୍ଦର୍ଯ୍ୟାନୁଭୂତି ସେମାନଙ୍କର ଜୀବନର ସାର ଅଙ୍ଗ । ସେମାନେ ନାନା ବର୍ଣ୍ଣର ମାଟି ସଂଗ୍ରହ କରି ସେଥିରେ ଗୃହର କାନ୍ଥକୁ ଏପରି ନିପୁଣ ଭାବରେ ଲେପନ କରିଥାନ୍ତି ଯେ ତାହା ବହୁ ସମୟରେ ଚିତ୍ରିତ ହେଲାପରି ଦେଖାଯାଏ । ଏହି ଚିତ୍ରଗୁଡ଼ିକରେ ଅବଶ୍ୟ ସୂକ୍ଷ୍ମ କାରୁକାର୍ଯ୍ୟର ଚିହ୍ନ ଦୃଷ୍ଟିଗୋଚର ହୁଏ ନାହିଁ । କିନ୍ତୁ ସ୍ଥୂଳ ଦୃଷ୍ଟିରେ ଦେଖିଲେ ଏହା ସମ୍ପୂର୍ଣ୍ଣ ରୂପେ ଛାୟାଚିତ୍ର (Silhoutte) ଭଳି ଜଣାଯାଏ । ଜୁଆଙ୍ଗ ଯୁବକମାନେ ନିଜର ପ୍ରେମିକାକୁ ସୁନ୍ଦର ସୁନ୍ଦର ପାନିଆ ଉପହାର

ଦେବାର ପରଂପରା ଅଛି । ଏହି ପାନଆଗୁଡ଼ିକ କାଠ କମ୍ବା ବାଉଁଶରେ ତିଆରି ହୋଇଥାଏ ଏବଂ ବିଭିନ୍ନ ଢଙ୍ଗର ହୋଇଥାଏ । ତୀକ୍ଷ୍ଣ ଲୁହା ନିର୍ମିତ ଛୁରିଦ୍ୱାରା ଖୋଦନ କରାଯାଇ ପାନଆର ଉପର ଅଂଶ ଚିତ୍ରିତ ହୋଇଥାଏ । ଉପଯୋଗୀ ବସ୍ତୁଗୁଡ଼ିକର ଉପଯୋଗିତା ସମ୍ବନ୍ଧରେ ସେମାନେ ପ୍ରଥମେ ଧ୍ୟାନ ଦେଇଥାନ୍ତି ଓ ପରବର୍ତ୍ତୀ ପର୍ଯ୍ୟାୟରେ ସେହି ବସ୍ତୁକୁ ଶ୍ରୀମଣ୍ଡିତ କରିବା ପାଇଁ ଆଗ୍ରହୀ ହୁଅନ୍ତି । ଏ କ୍ଷେତ୍ରରେ ଅବଶ୍ୟ ଉପଯୋଗୀତାର ମହତ୍ତ୍ୱ ମୁଖ୍ୟ ଓ ସୌନ୍ଦର୍ଯ୍ୟାନୁଭୂତି ଗୌଣ ।

(ବାସ୍ତବରେ ଯେଉଁମାନଙ୍କ ଗୃହରେ ଚିତ୍ରାଙ୍କନର ବହୁଳ ପ୍ରଚଳନ ଦୃଷ୍ଟିଗୋଚର ହୁଏ, ସେମାନେ ସମାଜରେ ଉଚ୍ଚତମ ଆସନ ପାଇଥାନ୍ତି । ଏଠାରେ କଳା ମଧ୍ୟ ଆଦିବାସୀମାନଙ୍କର ସାମାଜିକ ପ୍ରତିଷ୍ଠା ଓ ଆଦର୍ଶର ବାହକ । ଏଥିପାଇଁ ପ୍ରତିଷ୍ଠିତ ପରିବାରର ଦ୍ୱାର-ବନ୍ଧ ଓ କବାଟ ପ୍ରଭୃତିରେ ଖୋଦନ କାର୍ଯ୍ୟ କରାଯାଇଥାଏ । ନିଜ ଦେହରେ ମଧ୍ୟ ସେମାନେ ଚିତା କୁଟାଇଥାନ୍ତି । ଆଦିମକାଳରୁ ସୌନ୍ଦର୍ଯ୍ୟ ସୃଷ୍ଟି ଓ ସୁନ୍ଦର ବସ୍ତୁର ଉପଭୋଗ ପାଇଁ ମଣିଷ ମନରେ ଉଦ୍ଦାମପ୍ରେରଣା ରହିଛି । ଏହାକୁ ମଣିଷଜାତିର ସହଜାତ ପ୍ରବୃତ୍ତି କହିଲେ ଚଳେ । ଆଦିବାସୀମାନଙ୍କର ଏହି ପ୍ରେରଣା ଓ ଅନ୍ତର୍ନିହିତ ପ୍ରବୃତ୍ତିହିଁ ସେମାନଙ୍କର କଳାତ୍ମକ ବିକାଶ ଦିଗରେ ସହାୟକ ହୋଇଥାଏ । ନାନାପ୍ରକାର ଦୁଃଖ ଓ ନିର୍ଯାତନା ମଧ୍ୟରେ ସେମାନେ ଏଥିରୁ ଅନାହତ ଆନନ୍ଦ ଆହରଣ କରିଥାନ୍ତି । ଗୋଟିଏ ଆଦିବାସୀ ଗୀତରେ ବର୍ଣ୍ଣନା କରାଯାଇଛି, "ଆମେ ହୋଜିଲ ଅଛୁ, ସେଥିପାଇଁ ଦୁଃଖ କରନାହିଁ, କାରଣ ଆମେ ସୁଖୀ ଅଛୁ ।" ବିସ୍ତୀର୍ଣ୍ଣ ବଣ ଓ ପାହାଡ଼ ମଧ୍ୟରେ ମୁକ୍ତ ମଧୁର ଜୀବନ-ଯାପନ କରୁଥିବା ମଣିଷର ଏହାଠାରୁ ବଳି ଆତ୍ମାଭିମାନ ଆଉ ଅଧିକ କ'ଣ ହୋଇପାରେ ?



ଭୂଷଣପୁରର ଆଦିମ ଅଧିବାସୀମାନେ ପୂର୍ବପୁରୁଷଙ୍କୁ ପୂଜା କରିବା ଉଦ୍ଦେଶ୍ୟରେ, କୃଷିର ଉନ୍ନତି ପାଇଁ, ଭୂତ-ପ୍ରେତଙ୍କ ଉପଦ୍ରୁ ରକ୍ଷା ପାଇବା ପାଇଁ ଓ ବିବାହ ଆଦି ମଙ୍ଗଳ କାର୍ଯ୍ୟ ପାଇଁ କାନ୍ଥ ଦେହରେ ଓ କବାଟ ଦେହରେ ଚିତ୍ରାଙ୍କନ କରିଥାନ୍ତି । ଏହି ସମସ୍ତରେ ଧଳା ହଳଦି, ନାଲି ଓ କୃଷ୍ଣବର୍ଣ୍ଣରେ ଅନୁରଂଜିତ ହୋଇ ଥାଏ । ଏହି ଚିତ୍ର ମଧ୍ୟରେ ହାତୀ, ବଳଦ, ମଣିଷ, ଶୁଆ, ମୟୂର ଓ ଝିଟିପିଟି ପ୍ରଭୃତି ପ୍ରଧାନ । ଝିଟିପିଟି ସତ୍ୟ କହେ । ଏହି କଳିଯୁଗରେ କେବଳ ତାହାର ନିକଟରେ ସତ୍ୟର ସତ୍ତା ଅଛି ବୋଲି ସେମାନଙ୍କର ଦୃଢ଼ବିଶ୍ୱାସ । ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ସେମାନେ ଆଗ୍ରହର ସହିତ ସତ୍ୟର ପ୍ରତୀକ ରୂପେ ଝିଟିପିଟିର ଚିତ୍ର ଅଙ୍କନ କରିଥାନ୍ତି । ପକ୍ଷୀ-

ମାନଙ୍କ ମଧ୍ୟରେ ସେମାନେ ମୟୂରର ଚିତ୍ର ବର୍ଣ୍ଣାଢ଼୍ୟରୂପକୁ ଅଧିକ ପସନ୍ଦ କରନ୍ତି । ଏହି ଜାତୀୟ ପକ୍ଷୀ ଭାରତୀୟ କଳା କ୍ଷେତ୍ରରେ ଖ୍ରୀଷ୍ଟପୂର୍ବ ୬୦୦ ବର୍ଷ ତଳରୁ ନିଜର ଆସ୍ଥାନ ଦୃଢ କରିପାରିଛି । ସେଥିପାଇଁ ଏ. କେ. ଭଟ୍ଟାଚାର୍ଯ୍ୟ କହିଛନ୍ତି—

"From about 600 B. C. the punch—marked coins of India bear among other symbols a figure of a peacock on five — archedhillocks — ( Cultural from, January, 1964— Page-116 )

ଏଥିରୁ ସ୍ପଷ୍ଟ ହେଉଛି ଯେ ଆର୍ଯ୍ୟମାନଙ୍କର ଆଗମନର ବହୁପୂର୍ବରୁ ଭାରତର ଆଦିମ ଅଧିବାସୀମାନେ ମୟୂରକୁ ଉଚିତ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ଆମର ସଭ୍ୟ ଓ ଶିକ୍ଷିତ ସମାଜର ବ୍ୟବସ୍ଥା ଠାରୁ ଆଦିବାସୀ-ମାନେ ବହୁ ଦୂରରେ ରହିଛନ୍ତି । ନୃତତ୍ତ୍ୱ ଓ ସମାଜତତ୍ତ୍ୱ ଦିଗରୁ ଯେତେ ଗଭୀର ଗବେଷଣା କରାଯିବ, ସେମାନଙ୍କର ଜୀବନଯାପନ ପ୍ରଣାଳୀକୁ ଯେତେ ଶ୍ରଦ୍ଧାକୁ ଦୃଷ୍ଟିରେ ଅନୁଧ୍ୟାନ କରାଯିବ, ଆମର ବର୍ତ୍ତମାନର ସମାଜ ଆଦିମ ଅଧିବାସୀ ମାନଙ୍କର ସାଂସ୍କୃତିକ ଅଭିମୂଲ୍ୟ ନିକଟରେ କେତେ ପରିମାଣରେ ଋଣୀ ତାହା ସେତେ ସ୍ପଷ୍ଟ ଭାବରେ ଜଣାଯିବ । ଏଥିରେ ସନ୍ଦେହର ଅବକାଶ ନାହିଁ । ଲକ୍ଷ୍ୟ କଲେ ଦେଖାଯାଏ ଯେ ଓଡ଼ିଶାରେ ଆଦିମ ଅଧିବାସୀମାନଙ୍କର ଚିତ୍ରକଳାର ରେଖା ଓ ବର୍ଣ୍ଣ ବିନ୍ୟାସ ସହିତ ଝୋଟିଚିତ୍ର ପଟଚିତ୍ର ଓ ଲୋକଚିତ୍ର ଆଦିର ଯେଉଁ ମୌଳିକସମ୍ବନ୍ଧ ରହିଆସିଛି ତାହା ବିଶେଷ ଭାବରେ ପ୍ରଣିଧାନ ଯୋଗ୍ୟ ।





# ଉତ୍କଳୀୟ ଚିତ୍ରାଙ୍କନ : ଶାସ୍ତ୍ରୀୟ ଓ ଲୌକିକ

ପ୍ରାଚୀନ ଉତ୍କଳରେ ଚିତ୍ରାଙ୍କନର ପ୍ରଚଳନ ଥିଲା, ଏହା ସତ୍ୟ । କିନ୍ତୁ ଏହା କେବେ ଠାରୁ ଥିଲା ତାହା ସଠିକ୍ ରୂପେ କହିବା ସମ୍ଭବ ନୁହେଁ । ଏହାର ତଥ୍ୟବଦ୍ଧ ଇତିହାସ ମଧ୍ୟ ଲେଖା ହୋଇ ନାହିଁ । ଏପରି କ୍ଷେତ୍ରରେ ଆମକୁ ଯେଉଁଠୁ ଯେପରି ଐତିହାସିକ ତଥ୍ୟ ମିଳୁଛି ତାହାରି ଉପରେ ଆଂଶିକ ଭାବେ ଓ କିମ୍ବଦନ୍ତୀର କାହାଣୀ କାବ୍ୟ କବିତାର ବର୍ଣ୍ଣନା ପ୍ରଭୃତି ଉପରେ କେତେକ ପରିମାଣରେ ନିର୍ଭର କରିବାକୁ ହେଉଛି । ସର୍ବାଧୁନିକ ଗବେଷଣାନୁସାରେ ଜଣାଯାଏ ଯେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ରାଜା ଥିଲେ ଚେଦୀବଂଶୀୟ ସମ୍ରାଟ ଖାରବେଳ । ଏହି ଖାରବେଳଙ୍କ ଶିଳାଲିପିର ଦ୍ୱିତୀୟ ଧାଡ଼ିରେ ଅଛି, "ତତୋ ଲେଖ ରୂପ ଗଣନା ବ୍ୟବହାର ବିଧି ବିସାର ଦେନ ସବ ବିଜା ବଦା ତେନ ନବ ବସନ ଯୋବରଂ ବସାସିତଂ ।" ଏଥିରୁ ଜଣାଯାଏ ଯେ ଖାରବେଳ ଲେଖ, ରୂପ, ଗଣନ, ବ୍ୟବହାର ଓ ବିଧି ପ୍ରଭୃତି ବିଦ୍ୟାରେ ପାରଙ୍ଗମ ଥିଲେ । ଖାରବେଳଙ୍କ ସମୟରେ ଯେତେବେଳେ

ରୂପବଦ୍ୟା ପାଠ୍ୟକ୍ରମ ମଧ୍ୟରେ ସ୍ଥାନ ପାଇଥିଲା, ସେତେବେଳେ ନିଶ୍ଚୟ ଏହାର ପ୍ରଚଳନ ବହୁପୂର୍ବରୁ ଥିଲା ବୋଲି ଅନୁମାନ କରିବାକୁ ହେବ । ଏହା ବ୍ୟତୀତ ଶିଶୁପାଳଗଡ଼ରୁ ମିଳିଥିବା ଚିତ୍ରିତ ମୃତ୍ପାତ୍ର ଓ ମାଦଳାପାଞ୍ଜିର ଲେଖା ଇତ୍ୟାଦିରୁ ପ୍ରମାଣ କରାଯାଇପାରେ ଯେ ଓଡ଼ିଶାରେ ଚିତ୍ରକଳାର ଧାରା ପୁଷ୍ଟ ଓ ବଳିଷ୍ଠ ଥିଲା । ମହାରାଜା ମୁକୁନ୍ଦଦେବଙ୍କ ରାଜତ୍ୱର ବୟାଳିଶ ଅଙ୍କରେ ମହାପାତ୍ର ପିତାମ୍ବର ପଟ୍ଟନାୟକ ଲକ୍ଷ୍ମୀଙ୍କ ଜଗମୋହନ ଓ ଗୁଣ୍ଡିଚାଘରର ଚିତ୍ରିତ କରାଇଥିଲେ ।

ଉତ୍କଳୀୟ ଚିତ୍ରକଳାର ପରମ୍ପରା ପ୍ରତି ଦୃଷ୍ଟି ନିକ୍ଷେପ କଲେ ଜଣାଯାଏ ଯେ ଜନସାଧାରଣଙ୍କ ମଧ୍ୟରେ ଦୁଇଟି ମୁଖ୍ୟ ଧାରା କ୍ରମ୍ବିକାଶକ୍ରମ ଭାବରେ ରହିଆସିଛି । ଗୋଟିଏ ଧାରା ଶାସ୍ତ୍ରୀୟଚିତ୍ର ବା ଶୁଦ୍ଧଚିତ୍ର ଓ ଅନ୍ୟଟି ଲୋକଚିତ୍ର । ଏହି ଦୁଇ ଧାରା ସମାନ୍ତରାଳ ଭାବରେ ଗତି କଲେ ମଧ୍ୟ ଉଭୟ ମଧ୍ୟରେ ନିରବଚ୍ଛିନ୍ନ ସମ୍ପର୍କ ରହିଆସିଛି । ଶାସ୍ତ୍ରୀୟଚିତ୍ର ବା ଶୁଦ୍ଧଚିତ୍ର ହେଉଛି ସୁପରିକଳ୍ପିତ ଓ ଯତ୍ନ ଅଙ୍କିତ । ଏହାର ସର୍ବାଙ୍ଗରେ ଆଭିଜାତ୍ୟର ଚିହ୍ନ ରହିଛି । ଏହା ଦେବମନ୍ଦିର ଓ ରାଜଦରବାରର ସ୍ୱୀକୃତି ପାଇଛି । ଶ୍ରୀଜଗନ୍ନାଥଙ୍କର ଅନବସରକାଳୀନ ବା ଅଣସରକାଳୀନ ପୂଜା ହୋଇଥାଏ ଶାସ୍ତ୍ରୀୟ ପଦ୍ଧତିରେ ଅଙ୍କିତ ଓଡ଼ିଶୀ ପଟଚିତ୍ରକୁ ନେଇ । ଏହି ପଦ୍ଧତିକୁ ନିୟମିତ କରିବା ପାଇଁ ଶିଳ୍ପଶାସ୍ତ୍ରମାନ ରଚିତ ହୋଇଛି । ବ୍ରହ୍ମବିବର୍ତ୍ତ ପୁରାଣରେ ଉଲ୍ଲେଖ ଅଛି ଯେ ଚିତ୍ରକାରମାନେ ଶାସ୍ତ୍ରୀୟ ପଦ୍ଧତିରେ ଚିତ୍ରାଙ୍କନ ନ କରିବାରୁ ବ୍ରାହ୍ମଣମାନଙ୍କ ଦ୍ୱାରା ସମାଜରୁ ବହିଷ୍କୃତ ହୋଇଥିଲେ—

ବ୍ୟତିକ୍ରମେ ଭୁ.ଚିତ୍ରାଣାଂ ସଦ୍ୟ ଶ୍ଚିତ୍ରକର ସ୍ତଥା ।
ପତିତୋ ବ୍ରହ୍ମ ଶାପେନ ବ୍ରାହ୍ମଣାନାଞ୍ଚ କୋପତଃ ॥"

ଲୋକଚିତ୍ର ସର୍ବଜନୀନ ହୋଇଥିବାରୁ ଉପରୋକ୍ତ ସମସ୍ୟାବଳୀ ସେଥିରେ ନାହିଁ । ମହାପାତ୍ର ପିତାମ୍ବର ପଟ୍ଟନାୟକ ଲକ୍ଷ୍ମୀଙ୍କ ଜଗ-

ମୋହନ ମୁଖିକୁଣ୍ଡି ଗୃହରେ ଯେଉଁ ଚିତ୍ରାବଳୀ ଅଙ୍କନ କରାଇଥିଲେ, କମ୍ବା ବୃନ୍ଦାବନ ବିରଞ୍ଚିନାରାୟଣ ମନ୍ଦିରର କାନ୍ଥରେ ଯେଉଁ ଚିତ୍ରାବଳୀ ଅଙ୍କିତ ହୋଇଅଛି, ତାହା ଶାସ୍ତ୍ରୀୟ । ଶିଳ୍ପଶାସ୍ତ୍ରର ନିୟମମାନ ମାନି ବିଦଗ୍ଧ ଶିଳ୍ପୀଗଣ ତାହା ଅଙ୍କନ କରିଥିଲେ । ଭୌମ ନରପତି ଶୁଭଙ୍କରଦେବଙ୍କ ୮ମ ଶତାବ୍ଦୀରେ ପୁଷ୍ପଗିରି ବିହାରର ସ୍ଥବିର ପ୍ରାଜ୍ଞଙ୍କ ହସ୍ତରେ "ବୁଦ୍ଧାବତଂସକ ସୂତ୍ର" ନାମକ ବୌଦ୍ଧଗ୍ରନ୍ଥ ଓ କେତେକ ଶାସ୍ତ୍ରୀୟ ପଦ୍ଧତିରେ ଅଙ୍କିତ ଚିତ୍ରପଟ ତତ୍କାଳୀନ ଚୀନର ସମ୍ରାଟ ତ୍ସା—ସଙ୍ଗଙ୍କ ନିକଟକୁ ପଠାଇଥିଲେ । ପ୍ରାଚୀନ ଓଡ଼ିଆ କାବ୍ୟାବଳୀରେ ରାଜକୁମାର ଓ ରାଜକୁମାରୀମାନେ ଯେଉଁ ଚିତ୍ରପଟ ଦର୍ଶନ କରିଛନ୍ତି କମ୍ବା ଅଭିମନ୍ୟୁ ସାମନ୍ତସିଂହାରଙ୍କର ବିଦଗ୍ଧ ଚିନ୍ତାମଣି କାବ୍ୟର ରାଧିକା ଯେଉଁ ଚିତ୍ରପଟର ସନ୍ଦର୍ଶନରେ ଅଣଯୋଗ୍ୟତ ଓ ସ୍ତମ୍ଭୀଭୂତ ହୋଇଛନ୍ତି, ତାହା ନିଶ୍ଚୟ ବିଦଗ୍ଧ ଶିଳ୍ପୀମାନଙ୍କର ପେଲବ ତୂଳିକାର ସ୍ପର୍ଶରେ ହିଁ ଅଙ୍କିତ ହୋଇଥିବ । ଉତ୍କଳର ଶାସ୍ତ୍ରୀୟ କଳାଚର୍ଚ୍ଚା ମଧ୍ୟରେ ପ୍ରତିକୃତି ଚିତ୍ରଣ ଏକ ଉଲ୍ଲେଖ ଯୋଗ୍ୟ ସ୍ତରରେ ଥିଲା ବୋଲି ଏଥିରୁ ଅନୁମାନ କରିବାକୁ ହେବ । ମରହଟ୍ଟା ଶାସନ ଓ ବର୍ଗୀ ଅତ୍ୟାଚାରରେ ମ୍ରିୟମାଣ ହୋଇ ପଡ଼ିଥିଲା ଓଡ଼ିଶା । ଏହି ସମୟରେ ଜନ୍ମଗ୍ରହଣ କରିଥିଲେ କବିସୂର୍ଯ୍ୟ ବଳଦେବ ରଥ । ସେତେବେଳକୁ ଓଡ଼ିଶାର ଗୌରବ ରବି ଅସ୍ତମିତ । କବିସୂର୍ଯ୍ୟଙ୍କ ଚନ୍ଦ୍ରକଳା କାବ୍ୟରେ ଜେମା ଶୋଭମୃତ ନୃପ ଜନନୀଙ୍କର ଚିତ୍ରପଟ ଅଙ୍କନ କରିଛି ଭକ୍ତି ଦେହରେ । ଏହାର ଦର୍ଶନରେ ସ୍ୱୟଂ ଜନନୀ ପ୍ରଶଂସା କରିଛି—"ଏବେ ଗୁଣବନ୍ତି ପଣେ ତୋହରିଲେ ନୋହେ ଭାରତୀକ ତୂଳରେ ।" ଅଷ୍ଟାଦଶ ଶତାବ୍ଦୀର ଉତ୍କଳରେ ସାମନ୍ତମାନଙ୍କ କାନ୍ଥରେ ଶାସ୍ତ୍ରୀୟ ପଦ୍ଧତିର ଭିତ୍ତିଚିତ୍ର ଓ ବସ୍ତ୍ରଚିତ୍ର ପ୍ରସ୍ତୁତ ଅଙ୍କନ କରାଯାଉଥିଲା । ଏହାର ଦୃଷ୍ଟାନ୍ତ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଏକାଧିକ କାବ୍ୟରୁ ମିଳିପାରିବ—

"ସଚିତ୍ର କରନ୍ତି ଭିତ୍ତିମାନ ଚିତ୍ରକାରେ
ସଜାଡ଼ି ଭଉନ୍ତି ବାଣ ଜଣିଲା ଜନରେ । ୮ ।

ଶୁଭଦ୍ରା ପରିଣୟ—୧୬ ଛାନ୍ଦ

କମ୍ବା

"ମାଣିକ୍ୟ ମର୍କତ ପିଦ୍ଧା, ପିତ୍ତଳାଦିର ରଚନା
ଲତାପତ୍ରାରୁଢ ଡ଼ାଳ, ଡମ୍ଫିରେ ଝଳ ଯେ ।"
( କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ )

କମ୍ବା

"ସୁଧାଂଶୁ ପତ୍ର ମୋଡ଼ି ସୁଧାବସୁଧା ବଶୁତରଜତ ବାଡ଼
ପ୍ରତି କୋଠୀରେ କଳା ଚଉପଠୀରେ ଚିତ୍ରମାମାନ କବାଡ଼
ସେ ଝଳ, ବନ୍ଦ ହୁଡ଼ ହୋଇ କୁ ଘଳ
ମିନା ଲତାରେ କରିଛୁ ଝଳ
ଘାତ ବନେ କରନ୍ତି କ କେଳ ।"
( ଲାବଣ୍ୟବତୀ—୩୧ଶ ଛାନ୍ଦ )

ଉପରୋକ୍ତ ଆଲୋଚନାରୁ ଜଣାଯାଏ ଯେ, ଉତ୍କଳରେ ଅତି ଉନ୍ନତ ଧରଣର ଶାଢ଼ୀପ୍ନ ପଦ୍ଧତି ଅନୁସରଣ କରି ଶଙ୍ଖାଙ୍କନର ପରମ୍ପରା ନିଶ୍ଚୟ ଥିଲା । ଏହା ମଧ୍ୟ ଅନୁମାନ କରାଯାଏ ଯେ ଶାଢ଼ୀପ୍ନ ପଦ୍ଧତି ସହିତ ସମାନ୍ତରାଳ ଭାବରେ କେତେକ ଲୋକଶଙ୍ଖର ଅଙ୍କନ ରୀତି ମଧ୍ୟ ପ୍ରଚଳନ ଥିଲା । କବି ସମ୍ରାଟଙ୍କର ମାନସ କନ୍ୟା ଲାବଣ୍ୟବତୀ ଓଡ଼ିଆ-ରୀତି ଯୁଗୀପ୍ନ ସାହିତ୍ୟ ଓ ସଂସ୍କୃତିରେ ଲାବଣ୍ୟବତୀଟିଏ । କିନ୍ତୁ ସେ ସାଧାରଣ ନିମ୍ନଶ୍ରେଣୀପ୍ନ ଓଡ଼ିଆ ଘରର ଝିଅ କମ୍ବା ବଧୂ ନୁହେଁ । କେତେଜଣ ଅତି ସାଧାରଣ ଓଡ଼ିଆ ଘରର ଭୂମି ମୁକ୍ତାଭି ଚୂନରେ କମ୍ବା ଶ୍ରୀମୁକାର ଚୂନର ଲିପା ହୋଇଥାଏ ଓ କାନ୍ଥ ଚନ୍ଦ୍ରମା ପରି ଉଜ୍ଜ୍ୱଳ ଚିତ୍ରିତଭାବେ ନିର୍ମିତ ହୋଇଥାଏ ? ଏହା ଓଡ଼ିଶାରେ କମ୍ବା ସିଂହଳରେ ମଧ୍ୟ ସମ୍ଭବ ନୁହେଁ । ଲୋକସାଧାରଣଙ୍କ ଆଦରର ଧନ ହୋଇଛି ଲୋକଶଙ୍ଖ । ଏହା ସ୍ୱତଃ ସ୍ଫୂର୍ତ୍ତ ! କେବେ ଏହା କାହାଦ୍ୱାରା ଆରମ୍ଭ ହୋଇଥିଲା ତାହା ସମ୍ବନ୍ଧରେ କଳନା କରି କହିବା ସହଜ ନୁହେଁ । ପ୍ରତ୍ୟେକ ଯୁଗରେ ଏହା ପ୍ରତ୍ୟେକ ଲୋକ ଦ୍ୱାରା ଅଙ୍କିତ

ହୋଇ କାଳକ୍ରମେ ବର୍ତ୍ତମାନର ରୂପ ଗ୍ରହଣ କରିଛି ବୋଲି କୁହାଯାଇ ପାରିବ । ଏହାର ଶିଳ୍ପୀ ସମସ୍ତେ ଓ ରସଗ୍ରାହୀ ସମର୍ଥକ ମଧ୍ୟ ସମସ୍ତ । ଏଣୁ ଲୋକଚିତ୍ର ଯଥାର୍ଥରେ ଲୋକମାନସର ଅନାବିଳ ପ୍ରକାଶ । ଶାସ୍ତ୍ରୀୟଚିତ୍ରରେ ମସ୍ତିଷ୍କର ବ୍ୟବହାର ଓ ପାଣ୍ଡିତ୍ୟର ପରାକାଷ୍ଠା ପ୍ରତି-ଫଳିତ ହୋଇଥାଏ । କିନ୍ତୁ ଲୋକଚିତ୍ରରେ ରସର ମାଧୁର୍ଯ୍ୟ ଓ ହୃଦୟର ସ୍ଫୁରଣ ହିଁ ଅଧିକ ।



ବାହାରର ସଭ୍ୟତା ଓ ସଂସ୍କୃତିର ପାଦୁକାଘାତ ପ୍ରଭାବରୁ ଶାସ୍ତ୍ରୀୟଚିତ୍ର ବା କଳାତ୍ମକ ଚିତ୍ର ସମ୍ପୂର୍ଣ୍ଣ ମୁକ୍ତ ନୁହେ । ଏଥିରେ ବହୁ ଶିଳ୍ପ ଧାରାର ଓ ବହୁ ଶୈଳୀର ସଂଯୋଗ ଘଟିଛି, କିନ୍ତୁ ଲୋକଚିତ୍ର ସ୍ୱୟଂଭୂ ଓ ସ୍ୱୟଂସମ୍ପୂର୍ଣ୍ଣ । ଭିନ୍ନ ଭିନ୍ନ ଶାସ୍ତ୍ରୀୟ ଶୈଳୀର ପ୍ରଭାବ ଏହାକୁ



ପ୍ରଚଣ୍ଡ ଭାବରେ ଅଭିଭୂତ କରିପାରି ନାହିଁ । ସେହି କ୍ଷେତ୍ରରେ ଲୋକ-
ଶିଳ୍ପର ଶିଳ୍ପୀ ଐତିହ୍ୟ ଶତଧାରରୁ ପ୍ରେରଣା କିମ୍ବା ଉପାଦାନ ଗ୍ରହଣ
କରିଛି, ସେ କ୍ଷେତ୍ରରେ ଏହା କେତେକ ପରିମାଣରେ ପରହଂସ ତାକୁ
ଆଶ୍ରା କରିଥିଲେ ମଧ୍ୟ ନିଜର ବୈଶିଷ୍ଟ୍ୟ ଗୁଣଗୁଡ଼ିକୁ ହରାଇ ଦେଇ ନାହିଁ ।
ବରଂ ଅନ୍ୟକୁ ଆତ୍ମସ୍ଥ କରିପାରିଛି ତାହାର ଜୀବନର ପ୍ରାଣ ପ୍ରାଚୁର୍ଯ୍ୟ ଓ
ସ୍ୱଚ୍ଛନ୍ଦତା ମଧ୍ୟରେ । ଦେଶୀର ସଭ୍ୟତା ଓ ସଂସ୍କୃତିର ଚଳଣି ଏହା
ମଧ୍ୟରେ ଅନାବିଳ ଭାବରେ ରୂପାୟିତ ହୋଇଛି । ଏହା ମୃତସମାଜର
ଫସିଲ ନୁହେଁ । ପ୍ରାଚୀନ ହେଲେ ମଧ୍ୟ ଏହା ଚିରନବୀନ, ଜୀବନ୍ତ,
ରସାଳ ଓ ଲାବଣ୍ୟମୟ ।

ଲୋକଶିଳ୍ପର ପ୍ରଧାନତମ ଉପାଦାନ ହେଉଛି, ଅଙ୍କନ କଳା ।
ଏହାର ଛନ୍ଦ ଯେତେ ମୋଟା ସେତେ । ଏହା ଅଶିକ୍ଷିତ ନାରୀ ହୃଦୟର
ସ୍ୱାକ୍ଷର । ସମଗ୍ର କଳା ବୋଧକୁ ସରଳ, ସଜୀବ ଓ ଚେତନାମୟ କରିବା
ପାଇଁ ଓ ସ୍ୱଳ୍ପ ପରିସର ମଧ୍ୟରେ ସୁବନ୍ଧିତ ଭାବରେ ପ୍ରକାଶ
ପାଇଁ ଏହାଠାରୁ ବଳି ଉତ୍କୃଷ୍ଟ ଉପାଦାନ ନାହିଁ । ତେଣୁ ଏହାର ବ୍ୟଞ୍ଜନା
ଓ ଅର୍ଥ ଗୌରବ ଅତୁଳନୀୟ । ଅନାଘ୍ରାତ ଅରଣ୍ୟ କୁସୁମର ସୌରଭ-
ପରି ଏହାର ମାଧୁର୍ଯ୍ୟ ଓ ନମନୀୟତା ଅତ୍ୟନ୍ତ ଉପଭୋଗ୍ୟ । ଏହା
ଅଧିକାଂଶ ଲୋକଙ୍କ ରସବୋଧ, ଚିନ୍ତନ ବିଶ୍ୱାସ ଓ ଅନୁଭୂତିର
ପ୍ରତିନିଧି । ଇତିହାସ, ସମାଜତତ୍ତ୍ୱ ଓ ନୃତତ୍ତ୍ୱ ଦୃଷ୍ଟିରୁ ଝୋଟିଚିତା ଓ

ମୁରୁଜର ସଂକଳନ ଅତ୍ୟନ୍ତ ଉପାଦେୟ ମଧ । ଓଡ଼ିଶାର କେତେକ ଲୁପ୍ତ ଐତିହାସିକ ତଥା ଓ ସାମାଜିକ ଚଳଣୀ ବହୁ ପ୍ରାଚୀନକାଳରୁ ପରମ୍ପରା କ୍ରମେ ଏ ଅବଧି ଚଳି ଆସୁଛି । ଏହାର କେନ୍ଦ୍ରବିନ୍ଦୁ ରହିଛି ଉପେକ୍ଷିତ ଓ ଅବହେଳିତ ଗ୍ରାମଗୁଡ଼ିକରେ ।



ଆଲିମ୍ପନ କଳା ହେଉଛି ସମତଳ କାନ୍ଥ କିମ୍ବା ଚଟାଣ ଉପରେ ଅଂକିତ ଚିତ୍ର । କାନ୍ଥ ଦେହରେ କେବଳ ତରଳ ପଦାର୍ଥ ଦ୍ୱାରା ହିଁ ଚିତ୍ର ଅଙ୍କନ କରାଯାଏ । କିନ୍ତୁ ଚଟାଣ ଉପରେ ତରଳ ପଦାର୍ଥ ଦ୍ୱାରା ଝୋଟି-ଚିତା ଓ ଗୁଣ୍ଡ (ଚୂନା) ଦ୍ୱାରା ମୁରୁଜ ଚିତା ଲେଖାଯାଏ । ଷେଷ-ତଟଶଷରେ ଯେଉଁପରି ବିଭିନ୍ନ ବର୍ଣ୍ଣର ଚିତା କାନ୍ଥରେ ଅଙ୍କା ଯାଏ, ସେହିପରି ବିଭିନ୍ନ ବର୍ଣ୍ଣର ଗୁଣ୍ଡ, ଶସ୍ୟ କିମ୍ବା ଫୁଲ ଦ୍ୱାରା ମଧ୍ୟ ମୁରୁଜ ଲେଖିବାର ପରମ୍ପରାର ପ୍ରଚଳନ ଅଛି । କୁଆଁରୀ ପୂନେଇ ଦିନ ଝିଅ-ମାନେ କଇଁଫୁଲ ଓ ଜହ୍ନିଫୁଲରେ ଯେଉଁ କୋଠି ନିର୍ମାଣ କରନ୍ତି ତାହାବି ଏକପ୍ରକାର ମୁରୁଜ ଚିତାର ଅନ୍ତର୍ଗତ । ରଙ୍ଗୀନ ଚିତାରେ ସର୍ବଦା ସୁଲଭ ମୂଲ୍ୟର ମୌଳିକ ବର୍ଣ୍ଣକୁ ବ୍ୟବହାର କରାଯାଏ । ତାହା

ମଧ୍ୟରୁ ଲାଲ (ରକ୍ତ), ନୀଳ ଓ ଧଳା (ଶୁକ୍ଳ) ବର୍ଣ୍ଣଦ୍ୱାରା ଚିତ୍ରରଞ୍ଜନ ହୋଇଥାଏ । ସେଥିପାଇଁ ଲୋକ, ଲୋକାଚାର ଓ ପ୍ରବଚନ ମଧ୍ୟରେ ପ୍ରଚଳନ ଅଛି—

"ରକ୍ତ, ନୀଳ, ଶୁକ୍ଳ ବର୍ଣ୍ଣ
ସବୁ ସ୍ତ୍ରୀମାନଙ୍କର ଭଲଇ ମନ ।"

ଝୋଟିଚିତା ଓ ମୁରୁଜ ପ୍ରଭୃତିର ଉପକରଣ ଓ ଉପାଦାନ ସମ୍ବନ୍ଧରେ ବିସ୍ତୃତ ଆଲୋଚନାର କ୍ଷେତ୍ର ଏଠାରେ ନାହିଁ । ଅନ୍ୟତ୍ର ତାହାର ଆଲୋଚନା କରାଯିବ । ଏଠାରେ କେବଳ ଏତିକି ଜାଣିରଖିବା ଦରକାର ଯେ ଅଳଙ୍କାର କଳାର ଯେଉଁ ଉନ୍ନତ ପରମ୍ପରା ଓଡ଼ିଶାରେ ଦେଖାଯାଏ, ସେଥିରେ ସ୍ପଷ୍ଟାସ୍ପଷ୍ଟ ଚିତ୍ରଣ ସ୍ତରର ସ୍ଥାନ ନାହିଁ । ସମତଳ ପୃଷ୍ଠ ଭୂମି ଉପରେ କେବଳ ରେଖା ଦ୍ୱାରା ରୂପରେ ଆଶ୍ଚର୍ଯ୍ୟ ପ୍ରକାଶ ଘଟେ । ହାତର ଆଙ୍ଗୁଠି ଦ୍ୱାରା ସ୍ଥୂଳ ଧରଣରେ ଲେଖନ କଳା ବା ଲିପିଶିଳ୍ପ ପଦ୍ଧତିରେ ଆଭାସ, ପ୍ରତୀକ ଓ ରୂପକ ସାହାଯ୍ୟରେ ମନର ଭାବନାକୁ ବ୍ୟକ୍ତ କରାଯାଏ । ନାନାପ୍ରକାର ଲତା, ଧାନ ପୁଷ୍ପ, ପଲ୍ଲବ, ବୃକ୍ଷ, ନଦୀ, ପଶୁ, ପକ୍ଷୀ, ମତ୍ସ୍ୟ, ପଲ୍ଲୀ ଜୀବନର ଦୃଶ୍ୟ, ଶସ୍ୟଗୁଚ୍ଛ ବା କେଣ୍ଡା, ଚନ୍ଦ୍ର, ସୂର୍ଯ୍ୟ, ଦେବ, ଦେବୀ, ଗ୍ରହ, ନକ୍ଷତ୍ର ଏପରିକି ଗୃହର ନାନାବିଧ ସୌଖିନ ବ୍ୟବହାର ଯୋଗ୍ୟ ଉପକରଣ ମଧ୍ୟ କେବଳ ସୂଚନା ବା ଆଭାସ ଦ୍ୱାରା ଝୋଟିଚିତା ଓ ମୁରୁଜରେ ଚିତ୍ରିତ ହୋଇ-ଥାଏ । ଚିତ୍ର-ଚିତ୍ରାଳର ଚିତ୍ତାରେ ବ୍ୟସ୍ତ ଓ ବିବ୍ରତ ସମାଜ ମଧ୍ୟ ଏହ ଦ୍ୱାରା ଦୈନିକ ରୁଚିର ଓ ରୁଚିମନ୍ତ ହୁଏ ।





# ଆମରାଜ୍ୟର ଲୋକ କଳା : ଚିତା ଓ ମୁରୁଜ

ବିଭା ହୋଇ ବର ଫେରନ୍ତି । ବରଯାତ୍ରୀଗଣ ମଧ୍ୟ ଫେରି ଆସିଛନ୍ତି । ବାଦ୍ୟକରମାନଙ୍କର ଉଚ୍ଚକଣ୍ଠର ତାନ ନୀରବ ହୋଇଚାଲିଣି । ବଡ଼କାଠ, ଘୋଡ଼ନାଗରା, ଚେଙ୍ଗୀ ବାଜା ଇତ୍ୟାଦିର ବାଜଣା ଝଂକାର ଆଉ ନାହିଁ । ଢୋଲିଆ, ମହୁରିଆ, ଶଙ୍ଖୁଆ ସମସ୍ତେ ଚୁପଚାପ, ପାଲିଙ୍କି ଓ ସବାରୀର ବାହକମାନେ କ୍ଲାନ୍ତଶ୍ରାନ୍ତ । ଗହ ଗହ ଭାବ ମ୍ଳାନ ପଡ଼ି ଆସିଲାଣି । ସମସ୍ତେ ଯିମିତି ଏକାନ୍ତ ବିଶ୍ୱାସ ନେଉଛନ୍ତି । କିନ୍ତୁ ଘରକଣର ଝିଅ ବୋହୂ, ପୋଇଲି ପରିବାରୀମାନଙ୍କ କଣ୍ଠରୁ ଉଚ୍ଛୁଳି ଉଠୁଛି ହୁଳାଇ ହୁଳାଇ ମୁଖବାଦ୍ୟର ଧ୍ୱନି । ସେମାନେ ଘରଦ୍ୱାରର ଅଂଉମ୍ବରକୁ ଅତିକ୍ରମ କରି, ଛୁଆ ଗଜଉମାନଙ୍କୁ ଆଡେଇ ଦେଇ, ନୂଆ ଖଡ଼ଖଡ଼ିର ଦ୍ୱାର ଉନ୍ମୋଚନ କରି, ବରଣ କରି ନେଉଛନ୍ତି ଲାବଣ୍ୟ ପ୍ରତିମା ନବବଧୂକୁ । ସମଗ୍ର ଦିନର ଉପବାସ ପରେ ପିତା ମାତା, ଭାଇ ଭଉଣୀ, ସାଥି ସଙ୍ଗାତଙ୍କ ଠାରୁ ବିଦାୟ ନେଇ ଦୀର୍ଘ ପଥ ଆସିଲା ପରେ ଏହି ଅଭିନବ ପରିବେଶ ମଧ୍ୟରେ ତାହାକୁ ପ୍ରଥମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡିବ । ସବୁର ଆଖି ଆଗରେ ପିଠଉ ଚାଟିଆ ହାତରେ ଧରି ନଇଁ ନଇଁ ଶିଉଳି ଲେଖି ଲେଖି ଯିବାକୁ ହେବ

ବୋଷାଇଶାଳରେ ଥିବା ଦେଇପିଣ୍ଡି ପର୍ଯ୍ୟନ୍ତ । ସେହିଠାରେ ପିତୃପୁରୁଷଙ୍କୁ ଯଥାବିଧି ପ୍ରଣାମ କରିବ । ଏଠାରେ ପ୍ରାୟ ପ୍ରତ୍ୟେକ ଓଡ଼ିଆଘର ବୈଶିଷ୍ଟ୍ୟ । ଆକାର ପ୍ରକାରରେ କେଉଁଠି ଟିକେ ଊଣା ଥିବ ତ ଆଉ କେଉଁଠି କଞ୍ଚିତ ଅଧିକ ହୋଇଥିବ । ସେଥିପାଇଁ ପରା କହଣା ଗୀତରେ ଅଛି—

"କାନ୍ଥର ପିନ୍ଧୁଳ କାନ୍ଥେ ଲେଖିବ
ବାପ ଚନ୍ଦ୍ର ମୁଖ କେବେ ଦେଖିବ ··· ଏ କନା ।"

ଏ କଥା ନିଶ୍ଚିତ ସତ୍ୟ ଯେ ନବବଧୂଙ୍କୁ ପ୍ରଥମେ ପରଖ କରାଯାଇ ଥାଏ ତାର ଚିତ୍ରାଙ୍କନର ବୈଶିଷ୍ଟ୍ୟ ଦ୍ୱାରା । ତାହାପରେ ଆସେ ଲୁଗା କୁଞ୍ଚିବା, ଫୁଲ ଗୁନ୍ଥିବା, ପାନଭଙ୍ଗିବା, ଚନ୍ଦନ ତିଳକ ସଜାଇ ଅର୍ଚ୍ଚନା କରିବା, ଠାଆପିଢ଼ା ସଜାଡିବା ଓ ଖିରି ପିଠା ପରିବେଷଣ କରିବା ପ୍ରଭୃତି କଳାତ୍ମକ ଆଗ୍ରହ ଓ ଆଗ୍ରହଣର ଯଥାର୍ଥ ପରଖ । ଏହି ଗୋଟିଏ କଥାରୁ ସ୍ପଷ୍ଟ ହୋଇଯାଏ, କଳାତ୍ମକ ଜ୍ଞାନ ଉପରେ ପ୍ରତ୍ୟେକ ପରିବାରରେ ମନ୍ତ୍ରାଗତ ସାନ୍ତ୍ୱନା ହୋଇ ରହିଛି ଓ ତାହାକୁ ହୃଦୟର ପ୍ରାଚୁର୍ଯ୍ୟ ଦେଇ ଜୀଆଇ ରଖିଛି ନାରୀ ସମାଜ । ସେମାନେ ଅରୁଆ ଚାଉଳକୁ ବାଟି ସେଥିରେ ଅଳ୍ପ ପାଣି ମିଶାଇ ପିଠୋଉ କରନ୍ତି । ପିଠୋଉପାତ୍ରରୁ ଡାହାଣ ହାତର ବୁଢ଼ାଆଙ୍ଗୁଠି ଓ ପରିଆଙ୍ଗୁଠି ସାହାଯ୍ୟରେ ପିଠୋଉ ନେଇ ମନର ରୁଚି ଅନୁଯାୟୀ ଚିତା ଲେଖନ୍ତି । ହାତର ପରିଆଙ୍ଗୁଠି ଓ ବୁଢ଼ାଆଙ୍ଗୁଠିରୁ ଅତି ସହଜରେ ପିଠୋଉର ନିଗିଡ଼ ଯାଉଥିବାରୁ ସ୍ଥଳ ବିଶେଷରେ ଗ୍ରେଟ ପରି କନା ଖଣ୍ଡେ ଦୁଇ ଆଙ୍ଗୁଠି ମଝିରେ ପିଠୋଉ ହାରା ଭିଜାଇ ରଖନ୍ତି । ଆବଶ୍ୟକାନୁସାରେ ଏହି କନାର ଗଚ୍ଛିତ ପିଠୋଉକୁ ଅଳ୍ପ ଅଳ୍ପ ଚାପ ଦେଇ ଅଙ୍ଗୁଠି ମାଧ୍ୟମରେ ଝରାଇ ଆଣନ୍ତି । ଏହାହିଁ ହେଉଛି ଚିତା ଲେଖାର ସାଧାରଣ ପଦ୍ଧତି । କେତେକ କ୍ଷେତ୍ରରେ ବାହ୍ନି ପିଠୋଉରେ ଚିତା ଲେଖିବାର ପ୍ରଚଳନ ରହିଛି । ପିଠୋଉର ବଦଳରେ ଧଳା ଖଡ଼ିପଥରକୁ ଶିଳରେ

ବାଟି କମ୍ବା ଘୋଶ ଧଳା ରଙ୍ଗ ପ୍ରସ୍ତୁତ କରାଯାଇ ଥାଏ । ବହୁ ବର୍ଣ୍ଣରେ ରଞ୍ଜନ କରିବା ପାଇଁ ଧଳା ଖଡ଼ି ଭଳି ତାଳପଥର, କାଇମାଟି, ଗେରୁ-ମାଟିକୁ ମଧ୍ୟ ବ୍ୟବହାର କରାଯାଏ । କଳ୍ପ ସବୁଜ ମାଟି ଗୋବରରେ ଲିପାପୋଛା ହୋଇଥିବା ଚଟାଣ କମ୍ବା କାନ୍ଥ ଦେହରେ ପିଠୋଉ ବା ଖଡି ଘୋରର ଚିତା ନାଉଫୁଲ ଭଳି ଦାଉ ଦାଉ ଦେଖାଯାଏ । ସେହି ସୌନ୍ଦର୍ଯ୍ୟାନୁଭୂତିକୁ ଲୋକ କବି ରୂପ ଦେଇଛି—

"ଏ କୋଠା ନିପିଲି, ସେ କୋଠା ନିପିଲି,
ନାଉ ଫୁଲେ ଦେଲି ଝୋଟି ।"



ଏହି ଚିତାର ଅନ୍ୟ ନାମ ହେଉଛି ଝୋଟି । କାନ୍ଥରେ ଲେଖା ଯାଉଥିବା ଚିତା ଓ ଚଟାଣରେ ଲେଖା ଯାଉଥିବା ଚିତା ଉଭୟକୁ ଝୋଟି କୁହାଯାଏ । କାନ୍ଥରେ କେବଳ ଆଙ୍ଗୁଠି ସାହାଯ୍ୟରେ ଝୋଟି ବା ଚିତା ଲେଖିବା ସହଜ ନୁହେଁ । ସେଥିପାଇଁ ସ୍ତ୍ରୀ ଲୋକମାନେ ଆଙ୍ଗୁଠିକୁ ପିଠଉରେ ସମ୍ପୂର୍ଣ୍ଣ ବୁଡାଇ ଛୁଆଁ ଛୁଆଁ ଦିବ୍ୟସୁନ୍ଦର ଭାବରେ ଧାନସିଂପାର ଝୋଟି ଲେଖନ୍ତି ଏବଂ ତାହା ଉପରେ ତର୍ଜନୀ, ମଧ୍ୟମା ଓ ଅନାମିକା ଆଙ୍ଗୁଠି ସାହାଯ୍ୟରେ ବେଙ୍ଗେଇ ଲେଖି ଚୂଳଆ ସଜାନ୍ତି । ଏହା ବ୍ୟତୀତ କାନ୍ଥରେ ଚିତା ଦେବା ପାଇଁ ନାନାପ୍ରକାର

ଭୁଛାଁତି ଭୃକ୍ଷ ଉପାଦାନରେ ତୂଳି ତିଆରି କରିଥାନ୍ତି । କଥାପଟ ବା ଚେର, ଖଜୁରି କାଠି ଓ କଦଳବାସୁଙ୍ଗାକୁ ଛେଚି, ଖଣ୍ଡେ କାଠିରେ କନାଗୁଡ଼ାଇ ଏବଂ ଜୁଣକାଠ କମ୍ବା ବେଣା ଚେରକୁ ଏକତ୍ର ବାନ୍ଧି ନାନା ଧରଣର ତୂଳି ତିଆରି କରିଥାନ୍ତି । ପଟ ଲେଖାଁ କରନ୍ତୁ ସେଥିରେ ଲେଖିଗଲେ ମଧ୍ୟ ତାହା ସହଜରେ ଉଠିଯାଏ ନାହିଁ । କେଉଁଠି କେଉଁଠି ଡାଲଚଟକୁ ପିଠଉରେ ବୁଡ଼ାଇ କାନ୍ଥ ଦେହରେ ପିଟିବା ଦ୍ୱାରା କଦମ୍ବଫୁଲର ଚିତ୍ର ସହଜରେ ଲେଖି ହୋଇଥାଏ । ସେହିପରି ଫୁଟ ଫୁଟିକା ଫୁଲକୁ ପିଠଉରେ ବୁଡ଼ାଇ କାନ୍ଥରେ ଥାପିବା ଦ୍ୱାରା ମଧ୍ୟ ଚମତ୍କାର ଫୁଲର ଆକୃତି ଚିତ୍ରାକାରରେ ପ୍ରକଟିତ ହୋଇଥାଏ ।



ପିଟଉ ବ୍ୟତୀତ କେବଳ ଗୁଣ୍ଡ ବା ଧୂଳି ସାହାଯ୍ୟରେ ଯେଉଁ ଚିତ୍ର ଲେଖା ଯାଏ ତାହାକୁ ମୁରୁଜ କହନ୍ତି । ଝୋଟି କାନ୍ଥରେ ଓ ଚଟାଣରେ ଉଭୟତ୍ର ଲେଖାଯାଏ, କିନ୍ତୁ ଗୁଣ୍ଡ ବା ଧୂଳିକୁ ଯେଣୁ କାନ୍ଥରେ ମୁରୁଜ ଲେଖିବା ଅସମ୍ଭବ ମାତ୍ର । ଏଣୁ ମୁରୁଜ କେବଳ ଚଟାଣରେହିଁ ଲେଖାଯାଇ ଥାଏ । ଏଥିପାଇଁ ଆବଶ୍ୟକୀୟ ଉପାଦାନ ରୂପେ ଧଳା ପଥର ବା ଅନୁଅ ଉଜ୍ଜ୍ୱଳ ଗୁଣ୍ଡ, ଅଙ୍ଗାର ବା ଫଗୁ, ପୋଡ଼ା ସଢ଼େଇର ଗୁଣ୍ଡ ଓ ହଳଦୀ ଗୁଣ୍ଡ ବ୍ୟବହାର କରାଯାଇ ଥାଏ । ଏହା ଦ୍ୱାରା ଧଳା, ନାଲି, କଳା ଓ ହଳଦିଆ ଭଳି ଚାରିପ୍ରକାର ସମ୍ପୂର୍ଣ୍ଣ ମୌଳିକ ବର୍ଣ୍ଣର ଗୁଣ୍ଡ ମିଳି ଥାଏ । କେହି କେହି କିଛିଟା ବୈଶିଷ୍ଟ୍ୟ ପ୍ରକଟିତ କରିବା ପାଇଁ ଅଁଳା ପତ୍ର, ମୁଗ ଚୋପା, ଶିମ୍ବ ପତ୍ର କିମ୍ବା ମକମଲ ( ଗେଣ୍ଡୁ ) ପତ୍ରକୁ ଖରାରେ ଶୁଖାଇ ଗୁଣ୍ଡ କରି ସବୁଜ ବର୍ଣ୍ଣ ରୂପେ ବ୍ୟବହାର କରନ୍ତି । ସ୍ତ୍ରୀ ଲୋକମାନେ ଅଙ୍ଗୁଷ୍ଠ ଓ ତର୍ଜନୀ ମଝିରେ



ମୁରୁଜ ଧରି ଚଟାଣ ଉପରେ ହାତକୁ ଧୀରେ ଧୀରେ ଚଳାଇଲେ ସହଜରେ ମୁରୁଜ ଲେଖି ହୋଇଯାଏ । ମୁରୁଜ ଲେଖାକୁ ଅଧିକ ଆକର୍ଷଣୀୟ କରିବା ପାଇଁ ଚାଉଳ, ରାଶି, ମସୁର, ଗହମ, ମୁଗ ଇତ୍ୟାଦି ଶସ୍ୟରେ କିମ୍ବା ବିଭିନ୍ନ ବର୍ଣ୍ଣର ଫୁଲ ଓ ପତ୍ରରେ କେହି କେହି ଲେଖି ଥାଆନ୍ତି । କିନ୍ତୁ ଏ ଧରଣର ମୁରୁଜ ଲେଖା ସବୁଠି ଦୃଷ୍ଟିଗୋଚର ହୁଏ ନାହିଁ । ଗୋଟିଏ କଥା ସତ ଯେ ମୁରୁଜ ଦୀର୍ଘ କାଳ ସ୍ଥାୟୀ ହୋଇ ରହିପାରେ ନାହିଁ । ଖରାରେ ହଳଦି ରଙ୍ଗ ଉଡ଼ିଯାଇ ଧଳା ପ୍ରାୟ ହୋଇଯାଏ । ଚାଉଳ ଗୁଣ୍ଡକୁ କଳା ପିମ୍ପୁଡ଼ିମାନେ ବୋହି ନିଅନ୍ତି । ପବନରେ ମୁରୁଜ ଗୁଣ୍ଡ ଉଡିଯିବାର ସମ୍ଭାବନା କମ ନୁହେଁ । ଏପରି କ୍ଷେତ୍ରରେ ତାହାକୁ ଖୁବ୍ ବେଶୀ ହେଲେ ଗୋଟିଏ ଦିନରୁ ଅଧିକ ଅକ୍ଷତ ଭାବରେ ରଖିବା ସାଧାରଣରେ ସମ୍ଭବ ନୁହେଁ । ସେହିପରି ଚଟାଣ ଚିତା ମଧ୍ୟ ଅଳ୍ପକାଳ ସ୍ଥାୟୀ । କେବଳ କାନ୍ଥରେ ଯେଉଁ ଚିତା ବା ଝୋଟି ଲେଖା ଯାଏ ତାହା ଅଧିକ ଦିନ ରହେ । ଥରେ କାନ୍ଥକୁ ଲିପିପୋଛି ଚିତା ପକାଇ ଦେଲେ ଆଉ ଥରେ ଲିପାପୋଛା ହେବା ପର୍ଯ୍ୟନ୍ତ ତାହା ଅକ୍ଷତ ରହେ ।



ଝୋଟି କୁହ କମ୍ବା ମୁରୁଜ କୁହ ପ୍ରତ୍ୟେକର ବିଷୟବସ୍ତୁକୁ ମୋଟାମୋଟି ତିନିଭାଗରେ ବିଭକ୍ତ କରାଯାଇ ପାରେ; ଯଥା— ପ୍ରାକୃତିକ, ଆଲଂକାରିକ ଓ ଜ୍ୟାମିତିକ । ଫୁଲ, ପତ୍ର, ଲତା, ଡାଳ, ପଶୁ, ପକ୍ଷୀ ଓ ମଣିଷର ଅନୁକରଣରେ ଯାହା ଅଙ୍କନ କରାଯାଇ ଥାଏ ତାହା ପ୍ରାକୃତିକ ପଦ୍ମଫୁଲ, ସେବତୀଫୁଲ, କଦମ୍ବ ଗଛ, ଓଲଟ ଶୁଆ, ଶାଗ, ବଣି, ହଂସ, ମୟୂର, ବଗ-ବଗୁଲି, ହସ୍ତୀ ମତ୍ସ୍ୟ, ଧାନସିଂଘା, ଢେଙ୍କି ପ୍ରଭୃତିର ପ୍ରତୀକକୁ ସହଜରେ ପ୍ରକୃତ ଅନୁସାରୀ ଚିତ୍ର କୁହାଯାଇ ପାରିବ । ଏହି ପ୍ରକୃତି ଅନୁସାରୀ ଚିତ୍ରର ମଣ୍ଡଣୀ ଉପରେ ଛନ୍ଦର ସମତା ଓ ସୌଷ୍ଠବ ରକ୍ଷା କରି କଳ୍ପନା ଦ୍ୱାରା ଯେଉଁ ସବୁ କଳି, କୁମ୍ଭ, ବେଙ୍କି ଆଦି ଯୋଗ କରାଯାଏ ତାହା ପରମ୍ପରା କ୍ରମେ ଚଳି ଆସୁଥିବା ଆଲଂକାରିକ ମୁଦ୍ରା । ତଦ୍ଭିନ୍ନ ଦେବଦେବୀଙ୍କର ରୂପ, ଶଙ୍ଖ, ଚକ୍ର, ଗଦା, ପଦ୍ମ, ପାଶ, ସ୍ୱସ୍ତିକ, ଛତ୍ର, ଧ୍ୱଜ, କଳସ, ପ୍ରଦୀପ ପ୍ରଭୃତି ଅନେକାଂଶରେ ଆଲଂକାରିକ ମୁଦ୍ରାର ଅନୁସାରୀ ପ୍ରତୀକ । ଜ୍ୟାମିତିକ ଉପକରଣ ସାହାଯ୍ୟରେ ଯେଉଁ ମଣ୍ଡଣୀଗୁଡ଼ିକୁ ନିୟମିତ କରାଯାଏ, ତାହା ହେଉଛି ଜ୍ୟାମିତିକ ଚିତ୍ର । ବର୍ଗକ୍ଷେତ୍ର ତ୍ରିଭୁଜ, ବୃତ୍ତ, ଆୟତକ୍ଷେତ୍ର ପ୍ରଭୃତି ତାହାର ବାହାରର

ରୂପ । ନାଗବନ୍ଧ, ରଥବନ୍ଧ, ବିଭିନ୍ନ ଧରଣର କୋଠି, ଗ୍ରହଯନ୍ତ୍ର, ଗାରୁଡ଼ଗୁଣ୍ଡିର ଯନ୍ତ୍ର ଇତ୍ୟାଦି ଜ୍ୟାମିତିକ ଚିତ୍ରର ପର୍ଯ୍ୟାୟରେ ପଡ଼ିବା ସ୍ୱଭାବିକ । ସର୍ବୋପରି ସ୍ତ୍ରୀଲୋକମାନେ ଚିତ୍ର ଓ ମୁରୁଜକୁ ଆକର୍ଷଣୀୟ ଓ ନେତ୍ରାନୁରଞ୍ଜକ କରିବାକୁ ଚେଷ୍ଟା କରିଥାନ୍ତି । ସେଥିପାଇଁ ଏହି କଳାର କେତୋଟି ମୁଖ୍ୟ ବିଷୟ ପ୍ରତି ଦୃଷ୍ଟି ଦିଆଯାଇଥାଏ । ତାହା-ହେଉଛି ରେଖା, ଭରାଟ ବା ବ୍ଲକ (Block), ଶୋଭା ଓ ଅଳଙ୍କରଣ ଚିତ୍ର କିମ୍ବା ମୁରୁଜ ଶିକ୍ଷା କରିବା ପାଇଁ ସ୍ତ୍ରୀଲୋକମାନଙ୍କୁ କୌଣସି ବିଦ୍ୟାଳୟରେ ନାମ ଲେଖାଇବାକୁ ପଡେ ନାହିଁ । ଓଷା ବ୍ରତ, ପର୍ବ-ପର୍ବାଣି, ଉତ୍ସବ ଅନୁଷ୍ଠାନ ଗୁଡ଼ିକ ସେମାନଙ୍କ ପକ୍ଷରେ କଳାଶିକ୍ଷା ଓ କଳାବୋଧ ପରୀକ୍ଷାର ଉଚିତ ଅବକାଶ । ଏହି ସମୟରେ ଝିଅମାନେ ଆପଣା ଘରର ଓ ସାହିପଡ଼ିଶା ଘରର ସ୍ତ୍ରୀଲୋକମାନଙ୍କ କାର୍ଯ୍ୟରୁ ଦେଖି ଦେଖି ଶିକ୍ଷା କରିଥାନ୍ତି । ତାହାର ମଧ୍ୟରେ ନିଜର ମୌଳିକ ଦୃଷ୍ଟି ଓ ରୁଚିକୁ ପ୍ରକାଶ କରନ୍ତି । ବୁଦ୍ଧି ଓ ବିବେକକୁ ଖଟାଇ ନବୀନତା ପ୍ରକଟିତ କରିବାକୁ ସର୍ବଦା ଚେଷ୍ଟା କରନ୍ତି । ବାସ୍ତବ ସଂସାରର ଅନୁଭୂତିକୁ ମୂର୍ତ୍ତି ହସ ସରସ ଭଙ୍ଗୀରେ ପ୍ରକାଶ କରିବାକୁ ସାହସ କରନ୍ତି । ଏଣୁ ଚିତ୍ର-ଦିଆ ଉପରେ ସବୁବେଳେ ପାରିପାର୍ଶ୍ୱିକ ସାମାଜିକ ସାଂଗଣା ଓ ପରିବାରର ପାରମ୍ପରିକ କଳାବୋଧର ପ୍ରତ୍ୟାଘାତ ଘଟିଥାଏ ।

ମୋଟାମୋଟି ଭାବରେ ଦେଖିବାକୁ ଗଲେ ଲୋକଚିତ୍ରର ଏହି ପରମ୍ପରା ଗଢିଉଠିଛି ସମ୍ପୂର୍ଣ୍ଣ ରୂପେ ପାରିବାରିକ ଓ ସାମାଜିକ ଜୀବନକୁ କେନ୍ଦ୍ର କରି । ବିବାହ, ଉପନୟନ, ଓଷା ବ୍ରତ, ପର୍ବ ପର୍ବାଣୀ, ଉତ୍ସବ, ଆନ୍ଦୋଳ ଭିତରେ ଏହାର ବ୍ୟାପ୍ତି ଓ ବିସ୍ତୃତି । କାର୍ତ୍ତିକ ମାସରେ ବିଧବାମାନେ ପାଳନ କରୁଥିବା ରାଇଦାମୋଦର ବ୍ରତରେ ସାଧାରଣତଃ ଚଉରାମୂଳରେ ପଞ୍ଚୁକର୍ଣ୍ଣି ମୁରୁଜ ଲେଖା ହୋଇଥାଏ । ଏହାହିଁ ମୁରୁଜର ସର୍ବାଧିକ ଆକର୍ଷଣୀୟ ପ୍ରକାଶ । ସେହିପରି ମାର୍ଗଶୀର ମାସରେ ଧାନ-ଖଳାର ମେଢଠାରୁ ଆରମ୍ଭ କରି ଅଗଣା, ଚଟାଣ, ପିଣ୍ଡା ଓ କାନ୍ଥ ସର୍ବତ୍ର ଚିତ୍ର ଲେଖାଯାଏ । ଦଶହରା ସମୟରେ ଝୋଟି, ଗେରୁ, ନୀଳ,

ହରିଚନ୍ଦନ ପ୍ରଭୃତି ରଙ୍ଗ ଯୋଗେ କାନ୍ଥରେ ଚିତ୍ରାଙ୍କନ କରିବାର ଏକ ବଳିଷ୍ଠ ପରମ୍ପରା ରହିଛି । ଏହି ନିର୍ଦ୍ଦିଷ୍ଟ ସମୟକୁ ଛାଡିଦେଲେ ଚିତ୍ରାଉର, ଖଇଜାଜନ୍ତୁଆ, ଜହ୍ନିଓଷା, ରହ୍ମାପୂର୍ଣ୍ଣିମା, ମକରସଂକ୍ରାନ୍ତି ଓ ଝୁଦୁଚୁକୁଣୀ ଓଷା ପ୍ରଭୃତିରେ ନାନାବିଧ ଚିତା ଲେଖାର ପ୍ରଚଳନ ରହିଛି । ଏବେ ଏଗୁଡିକ ଧୀରେ ଧୀରେ ଅବକ୍ଷୟ ପଥରେ ଗତିକଲାଣି । ଆଧୁନିକ ଶିକ୍ଷା, ସଂସ୍କୃତି ଓ ନଗର ସଭ୍ୟତାର ପ୍ରସାର ସଙ୍ଗେ ସଙ୍ଗେ ଗାଆଁ ଗହଳିଆଁ ଗିହାଣୀମାନଙ୍କ ହୋଇଯିବା ସ୍ୱାଭାବିକ, ଯେଉଁଠି କଟେଶରେ ପୁଅ ଝିଅମାନେ ବିବାହ କର୍ମ ହାକିମ ସମ୍ମୁଖରେ ଶେଷ କଲେଣି, ସେଠାରେ ନବବଧୂକୁ ଶିଖାଇବାଲେଖାଇ ଚାଲି କଳାତ୍ମକ ଜ୍ଞାନର ପରୀକ୍ଷା କରିବା ଭଳି ଅବକାଶ କାହିଁ ? ଲୋକ ସଂସ୍କୃତି ହେଉଛି ଆମ ଜାତୀୟ ସଂସ୍କୃତିର ମୂଳଦୁଆ । କେବଳ ପାଇଁକି ମା ପିଲା ଝିଅମାନେ ମାଟିରୋଷର କାପ ତଳେ ଆଣୁମାଡ଼ି ବସି ଚିତା କମ୍ବା ମୁରୁଜ ଲେଖିବାକୁ କୁଣ୍ଠିତା । ଏହିପରି ଭାବରେ ବାରବାଇଗଣ ପୋଥି ବାଇଗଣ ହେବାକୁ ଯିବାରେ ବୈଚିତ୍ର ନାହିଁ । ଜାତୀୟ ସଂସ୍କୃତିର ମୂଲ୍ୟବାନ ଉପାଦାନଗୁଡ଼ିକୁ ଜିଆଇରଖି ପରିବର୍ତ୍ତିତ ସାମାଜିକ ମୂଲ୍ୟବୋଧ ଅନୁସାରେ ତାହାର ମନୋରଞ୍ଜକ ବ୍ୟଞ୍ଜନା ଓ ଚକ୍ଷୁରୋଚକ ଲିକାଙ୍କୁ ଉଚିତ ସମ୍ମାନ ପ୍ରଦର୍ଶନ କରିବା ବାଧ୍ୟ !

( ଆକାଶବାଣୀ, କଟକଙ୍କ ସୌଜନ୍ୟରୁ )





# ଆମ ସାହିତ୍ୟରେ ଲୋକ ଚିନ୍ତାର ସଂକେତ

ଓଡ଼ିଆ ସାହିତ୍ୟର ଆଦିକବି ସାରଳା ଦାସ । ସେ ସୂର୍ଯ୍ୟବଂଶୀ ସମ୍ରାଟ କପିଳେନ୍ଦ୍ର ଦେବଙ୍କ ସମୟରେ ଜନ୍ମଗ୍ରହଣ କରିଥିଲେ ଓ ମହାକାବ୍ୟ ରୂପେ ମହାଭାରତ ରଚନା କରିଥିଲେ । ଐତିହାସିକମାନଙ୍କ ମତରେ ଆଜକୁ ଅନ୍ୟୂନ ନିକ ପ୍ରାୟ ପାଞ୍ଚଶହ ବର୍ଷ ତଳେ ଓଡ଼ିଆ ସାହିତ୍ୟର ଏହି ଆଦି ସ୍ଫୁରଣ ଘଟିଥିଲା । ତାଙ୍କ ପରେ ବଳରାମ ଦାସଙ୍କର ତେଲ ରାମାୟଣ ବା ଦାଣ୍ଡି ରାମାୟଣ ଓ ଜଗନ୍ନାଥ ଦାସଙ୍କର ଭାଗବତ ଲିଖିତ ହୋଇ ଓଡ଼ିଆ ସାହିତ୍ୟର ଭିତ୍ତିଭୂମିକୁ ଦୃଢ଼ କରିଥିଲା । ସାରଳା ଦାସଙ୍କ ପୂର୍ବରୁ ଓଡ଼ିଆ ଭାଷା ଥିଲା ସତ୍ୟ, କିନ୍ତୁ ସୁବିପୁଳ ସାହିତ୍ୟସୃଷ୍ଟି ସମ୍ଭବ ହୋଇ ନ ଥିଲା । ସୂର୍ଯ୍ୟଯୁଗର ପୂର୍ବରୁ ଗଙ୍ଗ-ଯୁଗରେ ଯେଉଁ ଓଡ଼ିଆସାହିତ୍ୟର ପରିଚୟ ମିଳେ ତାହା ମାଦଳାପାଞ୍ଜି, ଛଗଡ଼ମାଳା, ବ୍ରତକଥା, ଲୋକଗୀତ ଓ କଳସା ଚଉତିଶା ନାମରେ ପରିଚିତ ବୋଲି ସାହିତ୍ୟ ସମୀକ୍ଷକମାନଙ୍କର ମତ । ଏହା ମଧ୍ୟରୁ ଅଧିକାଂଶ ହେଉଛି ସଂପୂର୍ଣ୍ଣ ମୌଖିକ । ମୁହେଁ ମୁହେଁ ତାହା ବହୁକାଳ

ପର୍ଯ୍ୟନ୍ତ ଚଳି ଆସିଛି ଓ ଏବେ ମଧ୍ୟ ସେଥିରୁ ବହୁ ଭାଗ ଲୁଣ୍ଠର ସାକ୍ଷୀ ହୋଇ ରହିଛି ।



ସାରଳାଙ୍କ ଠାରୁ ଆରମ୍ଭ କରି ବିଂଶଶତାବ୍ଦୀର ଆଦ୍ୟପାଦ ପର୍ଯ୍ୟନ୍ତ ଆମର ଯେଉଁ ସାହିତ୍ୟ ମନ୍ଦିର ଗଠିତ ହୋଇଛି ତାହା ମଧ୍ୟରେ ଓଡ଼ିଆ ଜାତିର ପଞ୍ଚଶହ ବର୍ଷର ପ୍ରାଣ ପ୍ରବାହ ରହିଛି । ସୂର୍ଯ୍ୟଯୁଗ ( ୧୪୩୫ ରୁ ୧୫୬୮ ), ମୋଗଲଯୁଗ ( ୧୫୬୮ ରୁ ୧୭୫୧ ) ଓ ମରହଟ୍ଟା ଯୁଗ ( ୧୭୫୧ ରୁ ୧୮୦୩ ) ଅତିକ୍ରମ କରି ତାହା ବ୍ରିଟିଶ ଶାସିତ ଓଡ଼ିଶାରେ ଆଧୁନିକ ସାହିତ୍ୟ ରୂପେ ଗତି କରିଛି । ଏହାହିଁ

ଛନ୍ଦବିହୀନ ସତ୍ୟ ! ଆଧୁନିକ ଯୁଗରେ ପଦାର୍ପଣ ପୂର୍ବରୁ ଆମର ବିପୁଳ ସାହିତ୍ୟକୃତି ମଧ୍ୟରୁ ଚିତ୍ରାଙ୍କନର ଯେଉଁ ସୂଚନା ମିଳେ ତାହା ମୁଖ୍ୟତଃ ଶାସ୍ତ୍ରୀୟ ଚିତ୍ର ରୂପେ ଗୃହୀତ ହୋଇଛି । କିନ୍ତୁ ଲୋକଚିତ୍ର ରୂପେ ଯାହା ବର୍ଣ୍ଣିତ ହୋଇଛି ତାହା ସାଧାରଣତଃ ତନୁଚିତ୍ର ମଧ୍ୟରେ ଗ୍ରହଣ କରାଯିବ । ଦେହର ଚର୍ମକୁ ଲୋଭନୀୟ ଓ କମନୀୟ କରିବା ପାଇଁ ଚନ୍ଦନ, ସିନ୍ଦୂର ଓ କସ୍ତୁରୀ ପ୍ରଭୃତି ଦ୍ୱାରା ମୁଖମଣ୍ଡଳ, ସ୍ତନମଣ୍ଡଳ ଓ ଜାନୁମଣ୍ଡଳରେ ଯେଉଁ ଚିତ୍ରାଙ୍କନ କରାଯାଏ, ତାର ବହୁ ପ୍ରାମାଣିକ ବର୍ଣ୍ଣନା ଆମର କାବ୍ୟ କବିତାକୁ ସମୃଦ୍ଧ କରିଛି । ସୂର୍ଯ୍ୟଯୁଗର କବି ଅର୍ଜ୍ଜୁନ ଦାସ "କଳ୍ପଲତା" କାବ୍ୟରେ ଲେଖିଛନ୍ତି—

"ସୁଗନ୍ଧ ମଧୁର ଲୁବ୍‌ଧେଣ ଭ୍ରୂଲତା ମଧୁପ ପନ୍ତି
କପୋଳ ମଦନ ଫଳ କି ସେ କସ୍ତୁରୀ-ତିଳକ କାନ୍ତି ।"

( ୩ୟ ଛାନ୍ଦ )

ଓ

"କପୋଳେ କସ୍ତୁରୀ ଚିତା ମନୋହର ଦିଶି
ରହୁଂ ଗରାସଇ ଯେସନ୍ତେ ପଉର୍ଣ୍ଣମୀ ଶଶୀ ହେ ।"

( ୯ମ ଛାନ୍ଦ )

ଅର୍ଜ୍ଜୁନ ଦାସଙ୍କ ପରେ ମୋଗଲ ଯୁଗରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଧନକୃଷ୍ଣ ଦାସ, ଭୂପତି ପଣ୍ଡିତ ଓ ଭକ୍ତଚରଣ ଦାସଙ୍କ ଯଥାକ୍ରମେ ଲାବଣ୍ୟବତୀ, ରସବିନୋଦ, ପ୍ରେମପଞ୍ଚାମୃତ ଓ ମଥୁରାମଙ୍ଗଳ କାବ୍ୟରୁ ସେ ଯୁଗର ସ୍ତନମଣ୍ଡଳ ଓ ମୁଖମଣ୍ଡଳରେ ମକରୀ ଓ ଭ୍ରମରୀ ପ୍ରଭୃତି ରଚନା କରାଯାଉଥିବାର ଯଥେଷ୍ଟ ପ୍ରମାଣ ମିଳେ । ମରହଟ୍ଟା ଯୁଗର କବି ଅଭିମନ୍ୟୁ ସାମନ୍ତ ସିଂହାର ଓ କବିସୂର୍ଯ୍ୟ ବଳଦେବ ରଥ ମଧ୍ୟ ଭଂଜୀୟ ପ୍ରଭାବରୁ ମୁକ୍ତ ନୁହନ୍ତି । ସେମାନଙ୍କ କାବ୍ୟରେ ଏହି ତନୁଚିତ୍ରର ପୁନଃପାତ ଦେଖାଯିବା ସ୍ୱାଭାବିକ । ବିଶେଷ ଭାବରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଆଜି ଦୁଇଟି ଲୋକକଳାର ଦୃଷ୍ଟାନ୍ତ ତାଙ୍କର ଲାବଣ୍ୟବତୀ

କାବ୍ୟରେ ଦେଇଛନ୍ତି, ଯାହା ଯଥାର୍ଥରେ ପ୍ରଣିଧାନ ଯୋଗ୍ୟ । ତାହା ହେଉଛି କୁଟାଇଚିତା ଓ ପାପୁଲି ଚିତ୍ରଣ । ପ୍ରାଚୀନକାଳରୁ ଏପର୍ଯ୍ୟନ୍ତ ଓଡ଼ିଶାରେ କୁଟାଇଚିତାର ପ୍ରଚଳନ ଅଛି । ଆଦିକବି ସାରଳା ଦାସଙ୍କର ମହାଭାରତର କାମାତୁର ରାଧିକା ଯେଉଁ ସହଜ ସୁନ୍ଦରୀକୁ ଦୂତୀ ରୂପେ କୃଷ୍ଣଙ୍କ ନିକଟକୁ ପଠାଇଛନ୍ତି, ସେ ବୃତ୍ତିରେ କୁଟ୍ଟିନୀ । କୁଟ୍ଟିନୀକୁ କେହି କେହି ଚିତାକୁଟା କେଳୁଣୀ କିମ୍ବା ଝୁଣ୍ଟି ଗୁନ୍ଦିଆଣୀ କହିଥାନ୍ତି । ଏହା କିନ୍ତୁ ଠିକ୍ ନୁହେଁ । କୁଟ୍ଟିନୀ ଶବ୍ଦ ବୃଦ୍ଧା ବେଶ୍ୟା କିମ୍ବା ଧୂର୍ତ୍ତ ନଷ୍ଟ ଚରିତ୍ରା ନାରୀ କ୍ଷେତ୍ରରେ ପ୍ରୟୋଗ କରାଯାଇ ଥାଏ । କାଶ୍ମୀର ଦାମୋଦର ଗୁପ୍ତଙ୍କ ଦ୍ୱାରା ୮ମ ଶତକରେ ଲିଖିତ ଏକ ବିଦ୍ରୂପାତ୍ମକ ସାହିତ୍ୟ ହେଉଛି "କୁଟ୍ଟିନୀ ମତ" । ଯେଉଁ ସ୍ତ୍ରୀଲୋକମାନେ ଗ୍ରାମେ ଗ୍ରାମେ ଚିତା କୁଟାଇବା ଚେଷ୍ଟା କରି ବୁଲନ୍ତି, ସେମାନେ କେଳା ସମ୍ପ୍ରଦାୟର ଅନ୍ତର୍ଭୁକ୍ତ । ସେମାନଙ୍କୁ ଉପକୂଳବର୍ତ୍ତୀ ଅଞ୍ଚଳରେ କେଳୁଣୀ କୁହାଯାଉଥିବା ସ୍ଥଳେ ଗଡ଼ଜାତ ଅଞ୍ଚଳରେ ଝୁଣ୍ଟି ଗୁନ୍ଦିଆଣୀ କୁହାଯାଇଯାଏ । ଏହି ଉଭୟ ଶବ୍ଦ ମଧ୍ୟରେ ଯଥେଷ୍ଟ ସାମ୍ୟ ପରିଲକ୍ଷିତ ହୁଏ । ଲାବଣ୍ୟବତୀ କାବ୍ୟର ଐନ୍ଦ୍ରଜାଲିକ ସହିତ ଆସିଥିବା ପ୍ରେମରୂପାନଟୀର ରୂପ ଓ ଶୋଭାବର୍ଣ୍ଣନ ପ୍ରସଙ୍ଗରେ ଚିତା ସମ୍ବନ୍ଧରେ ଯାହା ବର୍ଣ୍ଣିତ ହୋଇଛି ତାହା ନିମ୍ନରେ ପ୍ରଦତ୍ତ ହେଲା—

"କୁଟାଇଛି ଚିବୁକେ ମଧିକା ବିନ୍ଦୁଚିହ୍ନ
ଓଷ୍ଠେ ମଧୁ ସଞ୍ଚିବାକୁ କି ସେ ଉପସ୍ଥିତ ଯେ ।"

ଓ

ଅଞ୍ଜନ ଚିହ୍ନେ ରଞ୍ଜନ କରିଛ ପାପୁଲି
ଦର୍ପଣ ବସା ମୂଳରେ ଲିପିତ ଅଙ୍ଗୁଳି ଯେ ।"

(ଲାବଣ୍ୟବତୀ—ପଞ୍ଚଦଶ ଛାନ୍ଦ)

ଏହା ବ୍ୟତୀତ କବିସମ୍ରାଟ ମଧ୍ୟ ଅବାଧ ବେଶ୍ୟା ମଣ୍ଡଳ ମଧ୍ୟରେ ତାହା ଚରିତ୍ର ନିଖୁଣ ବର୍ଣ୍ଣନା ଦେଇଛନ୍ତି "ସୁଭଦ୍ରା ପରିଣୟ" କାବ୍ୟରେ—

"ଶୋଭିରେ ନବତନ ମୋତି ଚୂନ ଚୂର୍ଣ୍ଣ
ସୁଧା ଲେପନ ନକର କରେ ବିଲେପନ ଯେ ।"

(ସୁଭଦ୍ରା ପରିଣୟ—୧୬ଶ ଛାନ୍ଦ)

ଏହି ଠାରେ ଆଉ ଗୋଟିଏ କଥା ବିଶେଷ ଭାବରେ ସ୍ମରଣ କରାଯାଇ ପାରିବ । ଆମର ମଧ୍ୟଯୁଗୀୟ କାବ୍ୟାବଳୀର ଯେଉଁ ନାୟକ-ନାୟିକାମାନଙ୍କର ଚିତ୍ର ଦିଆଯାଇଛି ସେମାନେ ସମସ୍ତେ ସମାଜର ଶୀର୍ଷତମ ପରିବାର ସମ୍ଭୂତ । ସେମାନଙ୍କର ସାମାଜିକତା ସମ୍ପୂର୍ଣ୍ଣ ସମ୍ଭ୍ରାନ୍ତ ପରିବାର ଢଙ୍ଗରେ । ଏଣୁ ସେଠାରୁ ଧୂଳିଧୂସରିତ ମଣିଷର ଦୈନନ୍ଦିନ ଜୀବନର ନିଚ୍ଛକ ପ୍ରତିଚ୍ଛବି ଖୋଜିବା ବିଡ଼ମ୍ବନା ମାତ୍ର । ଯେଉଁଠି ପ୍ରେମରୂପାୟନରୀ ଭଳି ସମାଜର ନିମ୍ନଶ୍ରେଣୀର ଚରିତ୍ର-ଚିତ୍ରଣର ଅବକାଶ ମିଳିଛି ସେହିଠାରେ ଲୋକକଳା ସମ୍ବନ୍ଧରେ ଚୂମ୍ବକରେ ସଙ୍କେତ ଦିଆଯାଇଛି ମାତ୍ର । ଏହିପରି ଭାବରେ ଦେଖିଲେ ମଧ୍ୟ ମଥୁରାର ସମ୍ରାଟ କଂସର ଗନ୍ଧକାରୀ କୁବଜା ନିପୀଡ଼ିତ ସମାଜର ଏକ କୁତ୍ସିତା ନାରୀ ମୂର୍ତ୍ତିଟିଏ । ନିଥିବାକଂଟକର ଆଭିଜାତ୍ୟ ମଧ୍ୟରେ ତାର ସ୍ଥାନ ନେଇ କେହି କେବେ ହେଲେ ମୁହୂର୍ତ୍ତକ ପାଇଁ ଚିନ୍ତା ମଧ୍ୟ କରି ନାହିଁ । ସେହି କୁବଜା ଯେତେବେଳେ ମୋକ୍ଷଦାତା ଭଗବାନ ଶ୍ରୀକୃଷ୍ଣଙ୍କର ଆଗମନ ଉଦ୍ଦେଶ୍ୟରେ ପ୍ରତୀକ୍ଷା କରିଛି, ସେତେବେଳେ ସେ କାନ୍ଥରେ ଝୋଟି ଦ୍ୱାରା ପ୍ରତିମମାନ ଅଙ୍କନ କରିଛି—

"କାନ୍ଥମାନଙ୍କରେ ନାନା ଚିତ୍ର ପ୍ରତିମା
କଥା ନ କହି ହସନ୍ତି ଯେମନ୍ତ ବାମା ।"

(ରସକଲ୍ଲୋଳ—ଊନବିଂଶ ଛାନ୍ଦ)

ଅପର କ୍ଷେତ୍ରରେ କିନ୍ତୁ ସୁଭଦ୍ରା ସମ୍ଭ୍ରାନ୍ତ ପରିବାରର କନ୍ୟା ହୋଇଥିବାରୁ, ତାଙ୍କର ବିବାହକାଳୀନ ଚିତ୍ର କାନ୍ଥରେ ଚିତ୍ରକାର-ମାନଙ୍କ ଦ୍ୱାରା ଅଙ୍କନ କରାଯାଇଛି—

"ଲେଖିନ୍ତି କରନ୍ତି ଭିତ୍ତିମାନ ଚିତ୍ରକାରେ ।"

(ସୁଭଦ୍ରା ପରିଣୟ—୧୬ଶ ଛାନ୍ଦ)

ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ମଧ୍ୟଯୁଗର ସାହିତ୍ୟର ବିପୁଳ ଦରବାରରେ ଲୋକଚିତ୍ରର ସ୍ଥାନ ଗୌଣ । ସେ ସମ୍ପୂର୍ଣ୍ଣ ଅସ୍ପୃଶ୍ୟ ଓ ଅପାଂକ୍ତେୟ ହୋଇ ରହିଛି ବହୁକାଳ ପର୍ଯ୍ୟନ୍ତ । ଆଧୁନିକ ଯୁଗରେ ଯେତେ ଦୂର ଜଣାଯାଏ ପ୍ରଥମେ ପଲ୍ଲୀ କବି ଏହାର ନିଖୁଣ ବିବରଣୀ ପ୍ରଦାନ କଲେ ସାହିତ୍ୟରେ । ବାହାରେ ସେ ଥିଲେ ସହରୀ, ଶିକ୍ଷା-ବିଭାଗର ମାତ୍ର ନିର୍ମମ କର୍ମଚାରୀ । କିନ୍ତୁ ଅନ୍ତର ଭିତରେ ଥିଲେ ସେ ସମ୍ପୂର୍ଣ୍ଣ ଗାଉଁଲି । ତାଙ୍କର ଲେଖନୀ ସ୍ପର୍ଶରେ ପଲ୍ଲୀମାନଙ୍କ ଓଡ଼ିଶାର ପ୍ରକୃତ ରୂପ ସହଜ, ସରସ, ସାବଲୀଳ ଓ ସ୍ୱାଭାବିକ ଭାବରେ ପ୍ରକଟିତ ହୋଇଛି । ସେ ପଦ୍ୟରେ ଲେଖିଛନ୍ତି—

"ବଡ ଘର କୁମାରୀ ଦୁହିତା
ହାତ୍ରେ କାନ୍ଥେ ଲେଖିଛନ୍ତି ଚିତା
ପଦ୍ମବନ, ନାଗବନ୍ଧ—ଆଉ କେତେ ଚିତ୍ର ବନ୍ଧ
ଅନ୍ତଲିପି, ବହିଲିପି, ଗୋମୟାଦି ଛନ୍ଦ
ଶ୍ରୀରାମ ରାବଣ—କୁରୁପାଣ୍ଡବ ଦ୍ୱନ୍ଦ ।"

( ପଲ୍ଲୀ ଚିତ୍ର )



ପୁଣି ଗଦ୍ୟରେ ଏହାର ବିଷଦ ବର୍ଣ୍ଣନା କରିଛନ୍ତି—"ଏହା ଛଡ଼ା ଅନ୍ନକର୍ପି, ବନ୍ଧକର୍ପି, ଗୋମୂତ୍ରଛନ୍ଦ, ରଥବନ୍ଧ, ପଦ୍ମବନ୍ଧ ପ୍ରଭୃତି ବିବିଧ ଚିତ୍ରବନ୍ଧ ଦର୍ଶକର ନୟନ ମନ ହରଣ କରୁଅଛି ଏବଂ ଏହି ଉତ୍କଳୀୟ ଖାନ ଦାନ ଘରର ଶିଳ୍ପକଳା ଓ ରୁଚି ଓ ପ୍ରାଚୀନ ସାହିତ୍ୟ ଚର୍ଚ୍ଚାର ପରିଚୟ ପ୍ରଦାନ କରୁଅଛି । ଦୁଃଖର କଥା, ଏହି ପ୍ରାଚୀନ ରୁଚି ଅଧୁନା କ୍ରମଶଃ ବିଲୟ ପ୍ରାପ୍ତ ହେଉଅଛି ।"—(କନକଲତା-୮ମ ପରିଚ୍ଛେଦ) । ନନ୍ଦକିଶୋରଙ୍କର ପଦ୍ୟ ଓ ଗଦ୍ୟରେ ଯେଉଁ କଳା-ବୋଧର ସୂଚନା ଦିଆଯାଇଛି ତାହା ପଲ୍ଲୀର ହେଲେ ମଧ୍ୟ ସର୍ବଜନୀନ

ନୁହେଁ । ଶିକ୍ଷିତ କରଣ ସାଆନ୍ତ କମ୍ବା ଖଣ୍ଡାୟତ କ୍ଷତ୍ରୀୟ ଘରର କାନ୍ଥରେ ଉତ୍କୀର୍ଣ୍ଣ ହୋଇଥିବା ଦଶହରା ପର୍ବ ସମୟର ଚିତା ଲେଖା ମାତ୍ର । ସେଥିପାଇଁ ସେ ପରିଷ୍କାର କହିଛନ୍ତି ଯେ ଗ୍ରାମାଞ୍ଚଳରେ ବାସ କରୁଥିବା ଉଚ୍ଚଳୀୟ ଖାନ୍‌ଦାନୀ ଘରର (ବଡଘରଘ) କୁମାରୀ ଦୁହିତା ମାନଙ୍କ ମଧ୍ୟରେ ଯେଉଁ ଶିଳ୍ପକଳାଭିରୁଚି ଓ ପ୍ରାଚୀନ ସାହିତ୍ୟର ଚର୍ଚ୍ଚାର ପରଂପରା ଥିଲା ତାହାହିଁ ତାଙ୍କର ଆଦର୍ଶ ହୋଇଛି । କବି-ସମ୍ରାଟ ଉପେନ୍ଦ୍ର ଭଞ୍ଜ ମଧ୍ୟ ଚିତ୍ରକାବ୍ୟ ବନ୍ଧୋଦୟକୁ କେବଳ ଗୁଣୀଜନମାନଙ୍କ ପାଇଁ ଉତ୍ସର୍ଗ କରିଛନ୍ତି । ସେଥିନିମନ୍ତେ ସେ ଉକ୍ତ କାବ୍ୟରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି—

"ଏଥି ଅନନ୍ତେ ମେଧାବୀ ସୁବୁଦ୍ଧି
ବୁଝ ଚିତ୍ର ପ୍ରବନ୍ଧ ବନ୍ଧ ବିଧି ।"

( ଦ୍ୱିତୀୟ ଛାନ୍ଦ )

ସୁତରାଂ ଏହା ସାର୍ବଜନୀନ ସାହିତ୍ୟ ନୁହେଁ । କବିସମ୍ରାଟଙ୍କ ଚିତ୍ର କାବ୍ୟ ବନ୍ଧୋଦୟର ବନିବସାଣି ନନ୍ଦକିଶୋରଙ୍କ କାଳରେ ଅବକ୍ଷୟ ପଥରେ ଥିଲା । ଏହା ନିଶ୍ଚିତ । ଏବେ ସମ୍ପୂର୍ଣ୍ଣ ଲୋପ ପାଇ ଗଲାଣି ।

ଯାହାକୁ ଆମେ ସମ୍ପୂର୍ଣ୍ଣ ଗବେଷିତ କହୁଛୁ, ଯାହା କାଳର କରାଳ ଦନ୍ତାଘାତକୁ ଅସ୍ୱୀକାର କରି ଏବେ ମଧ୍ୟ ପ୍ରଚଳିତ ତାହାର ନିଦର୍ଶନ ପରିଚୟ ମିଳିଲା, ଆଧୁନିକ ଯୁଗରେ—କବି କୁଞ୍ଜବିହାରୀ ଦାଶଙ୍କ କବିତାରୁ । ସେ ଲୋକ-ସାହିତ୍ୟ ସଂଗ୍ରହ ପାଇଁ ଯେତେବେଳେ ଅଗ୍ରସର ହେଲେ ଓ ସମୟର ସୁବିଧାନୁସାରେ ଓଡିଶା ଓ ଓଡ଼ିଶାର ଉପାନ୍ତ ଅଞ୍ଚଳର ଗ୍ରାମ ଓ ଜାତଖାନାର କୁଳବୋହୂଗୁଡ଼ିକ ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ କଲେ ସେତେବେଳେ ଚିତା ଓ ମୁରୁଜ ଚିତ୍ରିତ ତାଙ୍କର କବି ଚିତ୍ତକୁ ଆନ୍ଦୋଳିତ କଲା । ସେ ତାହା ମଧ୍ୟରୁ ଅନାସ୍ୱାଦିତ ମାଧୁର୍ଯ୍ୟ ପାଇଲେ—

"କୁଅଁ ତାରା ଡାକେ ଅଧ ଭଙ୍ଗି ନାହିଁ କୁଆର
ଝରବର ହୋଇ ଧରଣୀ ଲଗଇ ଦୁଆର
ମୂ ଛୁଜର ଫୁଲ ହଏ ସେ ଫୁଟାଇ
ଧାନସିଂସାମାନ ହଏ ସେ ଲୋଟାଇ
ତାରା ପାଦେ ପାଦ ପଡବ ଲଖିମୀ ମାଆର
କୁଅଁ ତାରା ଡାକେ ନଡ ଭଙ୍ଗି ନାହିଁ କୁଆର ।"

( ଧରଣୀ )

× × ×

"ପଛୀ ବଧୂର ଝୁଲଝୁଲ ନାଦେ ପ୍ରଶଲାଣି ଶତ ସରଣୀ
ପିଠୋଉର ଝୁଟୁଟି ଧାନକେର ଚନ୍ଦ ରଚଇ ଧରଣୀ
ମା' ପାଦ ଚିତା ସଦନେ ସଦନେ
କ୍ଷେତ ଖଳାମେଢ଼ ବଦନେ ବଦନେ
ରଜତ ଚୂଳରେ ବୋଇତର ଛବି ସୁର ଲେଖେ କେଉଁ ରମଣୀ
ଧାନ ଗଦା ତେଲେ ଆବୋର ଘନ ତା ହସେ ଉଜ୍ଜ୍ୱଳ ଅବନୀ ।"

( ମାର୍ଗଶୀର )

× × ×

"କାନ୍ଥ କବାଟରେ ଲେଖୁଥିଲୁ କେତେ ଚିତା
ମୂ ଛୁଜ ଚୂନାରେ ଲେଖୁଥିଲୁ ରାମ ସୀତା ।"

( ଗାଁ ଗହଳର ସୀତା )

କିନ୍ତୁ ଲୋକଚିତ୍ର ସହିତ ଲୋକ ସାହିତ୍ୟର ସମ୍ପର୍କ ନିବିଡ଼ । ଲୋକ ସାହିତ୍ୟର ଉଦ୍‌ଭବ କେବେ ତାହା କେହି ସଠିକ୍‌ ଭାବରେ କଳନା କରି ପାରିବେ ନାହିଁ । ଏହା ସ୍ୱୟଂଭୂ । କିନ୍ତୁ ଶୂନ୍ୟାଶ୍ରୟୀ ନୁହେଁ । ଆଦିକବି ସାରଳା ଦାସଙ୍କ ପୂର୍ବରୁ ଯେତେବେଳେ ଓଡ଼ିଆଭାଷା,



ସାହିତ୍ୟ ଓ ଲିପି ଉପଯୁକ୍ତ ରୂପ ଗ୍ରହଣ କରି ନ ଥିଲା, ସେତେବେଳେ ମଧ୍ୟ ଲୋକଗୀତ ଥିଲା । ତାହା ତୁଣ୍ଡରୁ ତୁଣ୍ଡକୁ ହୋଇ ଏ ପର୍ଯ୍ୟନ୍ତ ବଞ୍ଚି ରହିଛି । ଏଣୁ ସେ ଯୁଗର ଯେଉଁ ଲୋକଗୀତ ଥିଲା ତାହାର ରୂପ ବର୍ତ୍ତମାନର ଲୋକଗୀତ ଠାରୁ ଭିନ୍ନ ଥିଲା କି ନ ଥିଲା ସେ ସମ୍ପର୍କରେ କୌଣସି ପ୍ରକାର ସତ୍ୟରେ କେହି ଉପନୀତ ହୋଇ ନାହାନ୍ତି । ଏହାର କୌଣସି ପ୍ରକାର ଲିଖିତ ଗ୍ରନ୍ଥ କିମ୍ବା ଦଲିଲ ନାହିଁ । କିନ୍ତୁ ଲୋକଗୀତ ମଧ୍ୟରେ ଯେପରି ଭାବରେ ଲୋକକଳା ବଞ୍ଚି ରହିଛି ସେହି ପରିମାଣରେ ବିଦଗ୍ଧ ସାହିତ୍ୟ ମଧ୍ୟରେ ବଞ୍ଚି ନାହିଁ । ଏହା ଦିବାଲୋକ ଭଳି ସୁସ୍ପଷ୍ଟ ସତ୍ୟ ! ସାଧାରଣ ଓଡ଼ିଆ ବଧୂର କସ୍ତୁରୀ ଓ ଚନ୍ଦନ ପଙ୍କ ଦେଇ ସ୍ତନ ଓ ଜାନୁ ମଣ୍ଡଳରେ ଦେଇନାକ ମକର ଓ ଭ୍ରମର ପ୍ରଭୃତି ଅଙ୍କନ କରି ସ୍ୱାମୀର ମନ କିଣିନେବା ପାଇଁ ସମୟ ନ ଥାଏ । ଅର୍ଥ ମଧ୍ୟ ନ ଥାଏ । ନୂ.ବ୍ ନବଣୀ ହେଲେ ସେ ହାତର ପାପୁଲି ଓ ଅଙ୍ଗୁଳିରେ ହରଗୌରୀ ଓ ମଞ୍ଜୁଆତିର ଲେପ ଦେଇ ନଖ ରଙ୍ଗାଏ । ଗଁସର ଦେଶ ବୁଲୁଥିବା କେଳୁଣୀମାନଙ୍କୁ ପଇସା ଚୁରଠା କିମ୍ବା ଚାଉଳ ପୋଷେ ଦେଇ ସେ ଝୁଆପୁଲି ଚିତା କୁଟାଏ । ଏହି ଚିତା ରକ୍ତ ମ୍ଲାନ ହୋଇ କୁଟାଇଲେ ମଧ୍ୟ ସମସ୍ତ ଜୀବନ ପାଇଁ ଦେହର ଶୋଭାବର୍ଦ୍ଧନ କରେ । କେଳୁଣୀ କେବଳ ପାଦ, ଗୋଡ଼ ଆଙ୍ଗୁଳି, ବଳାଗଣ୍ଠି, ହାତର ବାହା, ଭୁଜଦଣ୍ଡ, ହାତ-

ପାପୁଲି, ଆଙ୍ଗୁଳି ଓ ମୁଖମଣ୍ଡଳରେ ଚିତା କୁଟାଇ ସନ୍ତୁଷ୍ଟ ହୋଇପାରେ ନାହିଁ । ଦେହର ଗୋପନ ଅଂଶରେ ମଧ୍ୟ ସ୍ତ୍ରୀ ଚିତା କୁଟାଇ ସ୍ୱାମୀଙ୍କ ଦୃଷ୍ଟି ଆକର୍ଷଣ କରାଇବା ପାଇଁ ନର୍ଦ୍ଦେଶ ଦଏ—

“ସ୍ୱର୍ଗପୁର ଚିତା କୁଟିଦେବ ଜାନୁ ତଳେ
ରମ୍ଭା ସଙ୍ଗେ ଇନ୍ଦ୍ର ମଜ୍ଜି ଥିବେ କାମଭୋଳେ
ଗୋ ଦେଖି ଧନ
ବିଦେଶକୁ ନ କରିବ ମନ ।

× × ×

ଶିଷ୍ୱଷାଙ୍ଗୀ କପୋଳେ କୁଟିବ ପଞ୍ଚଶର
ବକ୍ଷପରେ କୁଟିଦେବ ସତନେ ଭ୍ରମର
ଗୋ ଦେଖୁଥିବେ
ଯେତେବେଳେ ମନେ ପକାଇବେ ।

× × ×

ଚତିମ୍ବତାର ଯେ ଚନ୍ଦ୍ର ଅଛନ୍ତି ଏନ୍ତ
ଚିତା କୁଟି ଦେଉ ପାଶେ ଓଳଗିବୁ ଯାଇ
ଗୋ ଖୁସି ହେବ
ପସନ୍ଦ କରି ମୋ ମୂଲ୍ୟ ଦେବେ ।”

( ପଲ୍ଲୀଗୀତ ସଂଚୟନ ୧ମ ଭାଗ )



ଏହା ବ୍ୟତୀତ ଝୋଟି ଓ ମୁରୁଜର ଚିତ୍ର ସମ୍ପର୍କରେ ଯେଉଁ ବଳିଷ୍ଠ ଭୂମିକା ଲୋକଗୀତ ମଧ୍ୟରେ ଅଛି ତାହା ସ୍ବତନ୍ତ୍ର ଭାବରେ ଚିହ୍ନି ହୋଇଯାଏ । ଥିଲ ନଥିଲ, ଛୋଟ ବଡ଼, ପ୍ରତ୍ୟେକ ପରିବାରରେ ଝୋଟି ଦେବା ଓ ମୁରୁଜ ଲେଖିବା ଏକପ୍ରକାର ପାଣ୍ଠୁଣାର ଅଙ୍ଗ । କିନ୍ତୁ ଏହି କାର୍ଯ୍ୟଟି କରିବା ପୂର୍ବରୁ ଗୃହକୁ ନିପୁଣ ଭାବରେ ଲିପିପୋଛି ସୁନ୍ଦର କରାଯାଏ । ଏହି ପରିଚ୍ଛନ୍ନତାହିଁ ସୌନ୍ଦର୍ଯ୍ୟବୋଧର ପ୍ରଥମ-ସୋପାନ । ସେଥିପାଇଁ ବଙ୍ଗଳାରେ ଗୋଟିଏ ପ୍ରବାଦ ଅଛି—

“ଖାଆଲେ ଜୁଆଲେ ବର, ଝକୋଲେ-ଜୁକୋଲେ ଘର । କ୍ଷୀରପୂତ ଧୋଇ କରି ଯେଉଁପରି ପରିଚ୍ଛନ୍ନ ହଏଣ, ଲିପାପୋଛା ପରେ ଗୃହର ପରିପାଟୀ ସୌନ୍ଦର୍ଯ୍ୟ ବୃଦ୍ଧି ହୁଏ । ପରିପାଟୀ ଓ ପରିଚ୍ଛନ୍ନତା ମଧ୍ୟରେ ଘରର ଶାନ୍ତ ଅବସ୍ଥା, ରୁଚି ଓ ଶୃଙ୍ଖଳା ପ୍ରକାଶିତ ହୁଏ । ଯେଉଁଠି ଘର ଭିତର ଅଳିଆ ଆବର୍ଜନାରେ ପରିପୂର୍ଣ୍ଣ ଥାଏ ଓ ବାହାରେ ଝୋଟି ଦେଖା ଯାଇଥାଏ, ସେଠାରେ ସମ୍ବଲପୁରୀ ଓଡ଼ିଆ ପଦେକଥାଟେ— “ଘର ଭନ୍ ଭନ୍ , ବାହରେ ଝୁଣ୍ଟି ।” ବଙ୍ଗଳାର ପ୍ରବଚନ ଭଳି ଓଡ଼ିଆରେ ମଧ୍ୟ ଅଛି—

“କ୍ଷେତକୁ କଥା ସୁନ୍ଦର
ଘରକୁ ଅଥା ସୁନ୍ଦର,
ଭତ୍ତକୁ ଗ୍ଣପା ସୁନ୍ଦର
କାନ୍ଥକୁ ଲିପା ସୁନ୍ଦର ।”

ଘରକୁ ଲିପିବାରେ ମଧ୍ୟ କଳାତ୍ମକ ଦୃଷ୍ଟିଭଙ୍ଗୀ ନିହିତ ଅଛି । ମାଟି ସହିତ ଗୋବରକୁ ଏକ ପ୍ରଧାନ ଉପାଦାନ ରୂପେ ମିଶାଇ ଲେପନ କରାଯାଏ । ଗୀତ ମୁର ଦାସ ଲେଖିଛନ୍ତି—

“ଛେଚ୍ଚ ପକାଇ ଖରକ ଘର ସେ ଦୁଆର
ପଛେ ଲିପିବ ପୁଣି ଗୋମୟ ଜଳର,

ଓ

“ଏକବର୍ଣ୍ଣ ଗାଈର ଯେ ଗୋବର ଆଣିଲା
ଝିଓମ କରିଣ ଘର ଦୁଆର ଲିପିଲା ।”

( ମହାଲକ୍ଷ୍ମୀ ପୁରାଣ )

ଗୋବରରେ ଲିପା ହୋଇଥିବା ସ୍ଥାନ ମାଟିର ବର୍ଣ୍ଣଠାରୁ କଅଁଳ ଗାଢ ଦେଖାଯାଏ ଓ ତାହା ଉପରେ ଉଜ୍ଜଳ ଧଳା ବର୍ଣ୍ଣର ଶଙ୍ଖା

ସାଜେଥିଲେ ଝିଲ୍‌ମିଲ୍‌ ଦେଖାଯାଏ । କିନ୍ତୁ ଅନ୍ୟଦିଗରୁ ବିଚାର କଲେ, ଗୋବରରେ ନାଇଟ୍ରିକ ଏସିଡ ଭାଗ ଥିବାରୁ ସେହି ଗନ୍ଧରେ ଘର ମଧ୍ୟକୁ ସାପ ଓ ଅନ୍ୟାନ୍ୟ ବିଷାକ୍ତ ଜୀବ ପ୍ରବେଶ କରନ୍ତି ନାହିଁ । ଏହା ଏକ ପ୍ରକାର ସ୍ୱାସ୍ଥ୍ୟ ଓ ରକ୍ଷା ପ୍ରତିଷେଧକ । ସୁତରାଂ ଏହି କାରଣରୁ ବାସ୍ତୁଗୃହଟିରେ ମଧ୍ୟ ନିଜର ବସା ଦ୍ୱାରରେ ଗୋବର ଦେଇଥାଏ । ମାଟି ଗୋବରରେ ଚୂନ୍ଥକନା ବୁଲାଇ ଆଣ୍ଡୁ ଆଣ୍ଡୁ ଓଡ଼ିଆଣୀର କଳାକୁଶଳୀ ହସ୍ତ କାନ୍ଥରେ ନାନା ପ୍ରକାର କଳା, କୁମ୍ଭ, ମୁଣ୍ଡିକ ଓ ଗଛ କାଟିଥାଏ । ଶୁଖିଗଲ ପରେ ଏହି କଳା ଓ ମୁଣ୍ଡୁକା ଚୂଡ଼ାନ୍ତ ଏକପ୍ରକାର ସ୍ୱପ୍ନାବେଶ ବା ଝିଲ୍‌ମିଲ୍‌ ଛବିର ସୂଚନା ଦିଏ । ଏଥିପାଇଁ ଲୋକଗୀତରେ ଅଛି—"ଘର ନିପିଥିବ ମୁଣ୍ଡୁକି ମୁଣ୍ଡୁକି କଳାକାଟି ଦେବ ଝିଅ ।" ଏହା ବାଲେଶ୍ୱର ଅଞ୍ଚଳର ଲୋକଗୀତ ହୋଇଥିବାରୁ ଏଠାରେ ନ ଦେଇ ନିଷେଧାର୍ଥକ ନୁହେଁ, ବରଂ ନିଷ୍ଠସ୍ୱାର୍ଥକ । ଗୋବର ବ୍ୟତୀତ ନାନାପ୍ରକାର ରଙ୍ଗମାଟି ବା ବନ ମାଟିରେ କାନ୍ଥକୁ ଲିପି ସୁଶୋଭନ କରାଯାଏ । ଏ ଧରଣର ପରଂପରା ଆଦିବାସୀମାନଙ୍କର ଗ୍ରାମରେ ଅବଧି ବଞ୍ଚି ରହିଛି ।



ଲିପାପୋଛା କାନ୍ଥରେ ମନର ସମସ୍ତ କଳ୍ପନା ଓ ହାତର ସମସ୍ତ ସାଧନାକୁ ଠୁଳକରି କୁଳବଧୂ ଚିତ୍ର ଲେଖେ । କିନ୍ତୁ ଚିତ୍ର ଲେଖି ସାରିଲା ପରେ ଯେତେବେଳେ ତାର ଶ୍ରମର ଉପଯୁକ୍ତ ମର୍ଯ୍ୟାଦା ପାଏ ନାହିଁ,

ସେତେବେଳେ ମନର ସଂଗ୍ରାମ ଚ୍ରନାଚୁନା ହୋଇ ଭାଙ୍ଗିପଡ଼େ । ଅଭିମାନ, ଅନ୍ତର୍ଦାହ, ନିପୀଡ଼ନ ଓ ବେଦନା ମଥିତ ହୃଦୟର ଦୀର୍ଘଶ୍ୱାସକୁ ଲୁଚିଥିବା ପଦ ଶୁ କରିପକାଏ—

"ଢ଼ିଙ୍କୁ ଢ଼ିଙ୍କୁ ପିଣ୍ଡାରେ　　ଦେଇ ଚଳି ଫୋଟି
କି ମାଡ଼ ମାଇଲା ସ୍ୱାମୀ　　ଫାଟି ଗଲା ପିଠି ।"

ପୁଣି

ଏ କୋଠା ନପିନ ସେ କୋଠା ନପିନ
　　　　ନାଗ ଫୁଲେ ଦେନି ଫୋଟି
ଶୋଇଲା ବେଳର କଥା ନ କହିଲା
　　　　ହୃଦୟ ଯାଉଛି ଫାଟି ।"

( ପଲ୍ଲୀଗୀତ ସଂଚୟନ—୧ମ ଭାଗ )

ଅନେକ ବାଳିକାବଧୂ ନିଜର ଘର ପାଇଁ ଅତି ଯତ୍ନରେ ସେବା କରେ । ତାହା ଠାରୁ ଆହୁରି ପରିପାଟୀର ସହିତ ତାହାକୁ ପରିବେଷଣ କରେ । ପରିଚ୍ଛନ୍ନ ଭାବରେ ଘର ଓଳାଇ ଭୁଞ୍ଜିବା ସ୍ଥାନକୁ ଅନ୍ତରର ସମସ୍ତ ସ୍ନେହରସ ନିଗାଡ଼ି ଚର୍ଚ୍ଚିତ କରେ ଓ ପିଢ଼ା ପକାଏ । ପିଢ଼ା ପକାଇବା ସ୍ଥାନରେ ପଦ୍ମ ଓ ଓଲଟ ଶୁଆ ପ୍ରଭୃତି ଚିତ୍ର ଝୋଟି ମଧ୍ୟରେ ଅଙ୍କିତ ହୋଇଥାଏ । ଖାଦ୍ୟପଦାର୍ଥ ସମନ୍ୱିତ ଥାଳି ଉପରେ ରଖାହୁଏ । ଏହା ଓଡ଼ିଆ ଘରର ସଂସ୍କୃତି ପରଂପରା—

"ଘର ଓଳେଇଲି ଝାଳିକ ଝୁମା
　　　　ପୀଢ଼ା ପକାଇଲି ବାଙ୍କେ
ଠାଆ ଭାଙ୍ଗିଦେଲି ଚନ୍ଦ୍ର କଣିଆ
　　　　ଭାଇ ଭାତ ଭୁଞ୍ଜ କଉଁଲୁକେ ।"

(ପଲ୍ଲୀଗୀତ ସଂଚୟନ—୨ୟ ଭାଗ)

ଏହା ଠାରୁ ଅଧିକ ସ୍ନେହଳ ବଚନ କ'ଣ ଥାଇପାରେ ? ବୋମ୍ବେ ଅଞ୍ଚଳରେ ଅତିଥିମାନଙ୍କର ସମ୍ମାନ ପାଇଁ ଖାଇବା ସ୍ଥାନକୁ ଚିତା ବା ରଂଗୋଲି ଦ୍ୱାରା ଚିତ୍ରିତ କରିବାର ପରଂପରା ଅଛି । ଏହା ଅନେକାଂଶରେ ବଙ୍ଗଦେଶରେ ନବବଧୂର ପାନ ସୁପାରିଲେଖା କିମ୍ବା ଅନ୍ନପ୍ରାସନ୍ନ ବେଦୀର ଚିତ୍ର ଭଳି । ଓଡ଼ିଶାରେ ଏହି ଧରଣର ଚିତା ଚିତ୍ରର ବହୁଳ ପ୍ରଚଳନ ଥିଲା । ଏବେ ଏହା ଅବକ୍ଷୟ ପଥରେ ଗତି କରୁଛି ।

ଯେତେବେଳେ କୁମାରୀ କନ୍ୟାମାନଙ୍କର ଶ୍ରେଷ୍ଠ ପର୍ବ ଜହ୍ନି ଓଷା ବା କୁମାରପୂର୍ଣ୍ଣିମା ଉପଗତ ହୁଏ, ସେତେବେଳେ ତରଳ ହୃଦୟର ଗଭୀର ଉଦ୍‌ବେଳନ ଦେଖାଦିଏ । ପ୍ରତ୍ୟୁଷରୁ ସ୍ନାନ ଶେଷକରି ଶୀତୁଳିଆ ପରିବେଶ ମଧ୍ୟରେ ଚଉରା ଲିପି ମୁରୁଜ ପକାଇବାକୁ ହୋଇଥାଏ । ଏହାର ବର୍ଣ୍ଣନା ଲୋକଗୀତରୁ ମିଳେ—

"ରାତିପାହାନ୍ତୁ ଉଠି ମୋ ନିତ ବାନ୍ଧବୁ ବେଣୀରେ
ଚଉରା ଲିପା ମୁରୁଜପକା କୁଆଁରପୁନେଇ ମେଳା
ଆଜ କୁଆଁରୀ କନିଆଁ ଖେଳା ।"

( ପଲ୍ଲୀଗୀତି ସଂଚୟନ ୧ମ ଭାଗ )



ଲୋକଗୀତରେ କଳ୍ପନାର ଦୁର୍ବଳ ବିଳାସ ନାହିଁ । ଏହାହିଁ ଲୋକଗୀତର ସବୁଠାରୁ ବଡ଼ ଗୌରବ । ଦୈନନ୍ଦିନ ଜୀବନର ଦୈନି-

ଜଣ୍ଟ୍ରକ ସମସ୍ୟାର ଲାଭ କ୍ଷତି ଓ ସୁଖ ଦୁଃଖ ମଧ୍ୟରେ ଲୋକ କବି ସ୍ୱତଃ ସ୍ଫୂର୍ତ୍ତ ଭାବରେ ଗୀତ ଗାଏ । ଏଣୁ ଏଥିରେ ଅଙ୍ଗେ ନିଭାଇବା କଥା ଗୁଡ଼ିକ କବିତ୍ୱର ଆବରଣ ମଧ୍ୟରେ ପ୍ରକାଶିତ ହୁଏ । ଉପରୋକ୍ତ ଉଦାହରଣ ଗୁଡ଼ିକ ନିତିଦିନିଆ ଜୀବନର ପ୍ରତିଛବି । ପ୍ରତ୍ୟକ୍ଷ ଅନୁଭବୀର ଅନ୍ତର ନିସୃତ ଅନାବିଳ ସାହିତ୍ୟ । ଏଥିରେ ଅତିରଞ୍ଜନ ନାହିଁ । ବିବାହ ଉତ୍ସବ ଉପଲକ୍ଷେ ଘରର କାନ୍ଥକୁ ଲିପାପୋଛା କରି ସୁନ୍ଦର ସୁନ୍ଦର ଚିତ୍ରରେ ମଣ୍ଡିତ କରାଯାଏ । ଶୁଭ୍ର ରଜତ ବର୍ଣ୍ଣର ଝୋଟି ଚିତ୍ରଗୁଡ଼ିକ ମଧ୍ୟରେ ଶୁଆ, ଶାରୀ, ବଣି, କଳସ, ପୂର୍ଣ୍ଣକୁମ୍ଭ, କନ୍ୟା-ମହାସ୍ନା, ବରପାଲିଙ୍କି, ମୁକୁଟ, କଜ୍ଜଳ ପାତ୍ରୀ, କଦଳୀ ଗଛ, ଅଳଙ୍କାର ପ୍ରଭୃତି ଅଙ୍କିତ ହୋଇଥାଏ । କିନ୍ତୁ କନ୍ୟା ଯେତେବେଳେ ବାହୁନି ବାହୁନି ପତି ଗୃହକୁ ଯାତ୍ରା କରେ ସେତେବେଳେ ପିତୃ ଗୃହର ସମସ୍ତ ପ୍ରକାର ସ୍ନେହ ମମତାମୟ ସ୍ମୃତିକୁ ସ୍ମରଣ କରି ବିଳାପ କରେ । ସେ କହେ—

"କାନ୍ଥେ ରଖ ଶୁଆ ଶାରୀଙ୍କି ଲେଖି
ମୁଁ ମଲେ ପାଇବ ତାକରେ ଦିଠି ।"

( କାନ୍ଦଣା )

ଗ୍ରାମର ଆଭିଜାତ୍ୟପୂର୍ଣ୍ଣ ସମ୍ଭ୍ରାନ୍ତ ପରିବାର ଗୁଡ଼ିକ ନିଜର ଆଟୋପକୁ ଛାଡ଼ନ୍ତି ନାହିଁ । ଆଭିଜାତ୍ୟର ପଣତ ତଳେ ଅଭାବ-ଅନାଟନକୁ ଘୋଡ଼ାଇ ବାଟ ଚାଲନ୍ତି । ଏହି ଆଭିଜାତ୍ୟ ପ୍ରକଟିତ ହୋଇଥାଏ ସେମାନଙ୍କର ଠାଣି, ମାଣି, ରୁଚି ଓ କଳାପୂର୍ଣ୍ଣ ଚାତୁର୍ଯ୍ୟ ମଧ୍ୟରେ । ସଳୁକୁଞ୍ଚକରି ଲୁଗାପିନ୍ଧା, କାନ୍ଧରେ ପାଟଲି ଗାମୁଛା, ମୁଣ୍ଡରେ ଚିକଣ କଲି, କାନରେ ରୂପାର ଦାନ୍ତଖୁଣ୍ଟା, ଦାନ୍ତରେ ସୁନାଖିଲ, ଲବଙ୍ଗମରି-କର୍ପୂର ଦିଆ ବିଭିନ୍ନ କିସମର ପାନଖିଲ ମଧ୍ୟରେ ସମ୍ପୂର୍ଣ୍ଣ ରୂପେ ସାଆନ୍ତ ଘରର ଢଙ୍ଗ ପ୍ରକାଶ ପାଏ । ଅନ୍ତଃସାର ଶୂନ୍ୟ କଳା କୁଶଳୀ ଆଡ଼ମ୍ବରକୁ ଲକ୍ଷ୍ୟ କରି ଲୋକ କବି ଢଗ ଢମାଳିମାନ ରଚନା କରିଛି—

"କରଣ ଘରର ଛମ
ମୁଆଁ ବପୁଞ୍ଜାକୁ ଛ'ଅଣା ବଦାକ
ହାଣ୍ଡି ଗୃଣପଟେ କମ ।"

କମ୍ବା

କରଣ ସାଆନ୍ତ ଓମ,
ଡ଼ଙ୍ଗୁଡ଼ା ହାଣ୍ଡିକ ଛଅଟା ପଇସା
ବଢ଼ପାକ କୋଟି କମ ।"

( ପଲ୍ଲୀଗୀତି ସଞ୍ଚୟନ—୨ୟ ଭାଗ )





# ଲୋକଚିତ୍ର ମଧ୍ୟରେ ପରଂପରାର ସନ୍ତକ

ଉତ୍କଳର ସାଂସ୍କୃତିକ ପ୍ରବାହ ପ୍ରଥମରୁ ଏକ ଅବଚ୍ଛିନ୍ନ ଧାରା ରୂପେ ପ୍ରବାହିତ ହୋଇ ବର୍ତ୍ତମାନର ସ୍ତରରେ ପହଞ୍ଚି ନାହିଁ । ଏଥିରେ ମୁଖ୍ୟତଃ ତିନୋଟି ବଳିଷ୍ଠ ପ୍ରବାହର ମିଳନ ଘଟିଛି, ଶବର ବା ନିଷାଦ ସଂସ୍କୃତି, ଦ୍ରାବିଡ଼ ସଂସ୍କୃତି ଓ ଆର୍ଯ୍ୟ ସଂସ୍କୃତି । ଏଣୁ ଏବେ ଆମେ ଯେଉଁ ଉତ୍କଳୀୟ ପରଂପରାର ଦାୟାଦ ହୋଇଛୁ ସେଥିରେ ଭାରତର ଆଦ୍ୟେତର ଅଧିବାସୀମାନଙ୍କ ଠାରୁ ଆରମ୍ଭ କରି ଆର୍ଯ୍ୟମାନଙ୍କ ପର୍ଯ୍ୟନ୍ତ ସମସ୍ତ ପ୍ରକାର ସାଂସ୍କୃତିକ ଆଭିମୁଖ୍ୟର ସନ୍ତକ ରହିଛି । ଓଡ଼ିଶାର ମନ୍ଦିର, ଲିପି, ସାହିତ୍ୟ, ନୃତ୍ୟ, ସଙ୍ଗୀତ, ଚିତ୍ର, ଧର୍ମ ଓ ଦର୍ଶନରେ ଦକ୍ଷିଣ ଓ ଉତ୍ତର ଭାରତର ପ୍ରଭାବ ଆଦୌ ନ୍ୟୂନ ନୁହେଁ । ଐତିହାସିକମାନେ ମତ ଦିଅନ୍ତି ଯେ ଓଡ଼ିଶାର ପ୍ରାଚୀନ ସଭ୍ୟତାର୍

ହୋଇଅଛି ଶବର ସଭ୍ୟତା । ଏହି ପ୍ରସଙ୍ଗରେ ଉଲ୍ଲେଖ କରଯାଏ ଯେ ନେହବାଳାଗ୍ର ଦସ୍ପୁତାମାନେ ସ୍ନାନ ଯାତ୍ରା ଦିନ ପ୍ରଥମେ ଜଗନ୍ନାଥଙ୍କୁ ସେବା କରିବାର ସୁଯୋଗ ପାଇଥାନ୍ତି । ବାହୁଡା ପର୍ଯ୍ୟନ୍ତ ଏହିମାନଙ୍କ ହାତରେ ଠାକୁରଙ୍କର ସେବାପୂଜା ନ୍ୟସ୍ତ ଥାଏ । ଦସ୍ପୁତା କହିଛି ଦୈତ୍ୟ ଶବର ଅପଭ୍ରଂଶ ବୋଲି ଅନେକଙ୍କର ମତ । ଦୈତ୍ୟ, ଶବର, ଭିଲ, ଏସବୁ ଗୋଟିଏ ପର୍ଯ୍ୟାୟବାଚୀ ଶବ୍ଦ । ଶବର ବା ସୌରା ଭାଷାରେ କଲୁଙ୍ଗ କହିଲେ ଆଦ୍ୟ ଦେବତାଙ୍କୁ ବୁଝାଏ । କଲୁଙ୍ଗଙ୍କର ଦଶଗୋଟି ରୂପ ଅଛି ବୋଲି ସେମାନଙ୍କର ବିଶ୍ୱାସ । ଏମାନେ ଦଶଭାଇ ବୋଲି କୁହାଯାଇ ଥାଏ । ଉକ୍ତରେ ବେଣୀମାଧବ ପାଢ଼ୀଙ୍କ ଉକ୍ତି ଅନୁସାରେ—"ଏକରେକ ଉତ୍ସବରେ ଦଶଟିଯାକର ବଳକଟାଳର ଚିହ୍ନ ଗୋଟିଏ ଘରର କାନ୍ଥରେ ଲେଖା ହୁଏ । ସବୁ ଚିହ୍ନକୁ କଲୁଙ୍ଗଙ୍କର ଭିନ୍ନ ଭିନ୍ନ ରୂପ ବୋଲି ଏକାଠି ପୂଜା କରଯାଏ"—(ଦାରୁଦେବତା-ପୃ ୪୩) । ସେହି ଦଶଗୋଟି ରୂପ ହେଉଛନ୍ତି ଜଗନ୍ତ, ଚୋଡ, ଭୁମନ, ଭାମ, ରଂରଂ, ଗର୍ସିଦ, ସମନ. ଯୋଜେ, ପଳ, ମତ୍ତ ଓ ଛିତ । କଲୁଂଙ୍କର ଆଦ୍ୟରୂପ ଜଗନ୍ତ ହୁଏତ ପରବର୍ତ୍ତୀ କାଳରେ ଜଗନ୍ନାଥ ହୋଇଛନ୍ତି । ହିନ୍ଦୁମାନେ ଜଗନ୍ନାଥଙ୍କୁ ମଧ୍ୟ ଭଗବାନଙ୍କର ଦଶଅବତାର ମଧ୍ୟରେ ଏକ ଅବତାର ରୂପେ ଓଡିଶାରେ ଗ୍ରହଣ କରନ୍ତି । ଏହା ଲୋକ ମନର ଆରୋପ । ବଳରାମ ଦାସ ସେଥିପାଇଁ ଲେଖିଛନ୍ତି—

"ଉତ୍ର ଗ୍ରସ୍ତନେ ନୀଳଗିରି
ପର୍ବୀ ବଜପ୍ୟେ ନରହରି,
ଜଗତ ଈଶ୍ୱର ଠାକୁର
ଲୀଳା ପ୍ୟେ ନାନା ଅବତାର" ( ବେଦାନ୍ତସାର ଗୁପ୍ତ ଗୀତା )

ଓଡିଶାରେ ବୌଦ୍ଧ ଅବତାର ସ୍ଥାନରେ ଜଗନ୍ନାଥଙ୍କ ମୂର୍ତ୍ତି ଅଙ୍କିତ ହେବାର ପରଂପରା ରହିଛି ଓ ଏହାର ସୂଚନା ଦାଢ଼୍ୟତା ଭକ୍ତିରୁ ମିଳେ—

"ବଉଧ ରୂପେ ନରହରି
ନୀଳକନ୍ଦରେ ବିଜେ କରି ।"

ଯେଉଁ ବିଧବାମାନେ କାର୍ତ୍ତିକ ମାସରେ ହବିଷ୍ୟ ରକ୍ଷା କରି ତୁଳସୀ, ଅଁଳା ଓ ବାଲୁକା ପ୍ରଭୃତି ପୂଜା କରନ୍ତି, ସେମାନେ ମୁରୁଜରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ଚିତ୍ରାଙ୍କନ କରିଥାନ୍ତି । ଏହା ବ୍ୟତୀତ ଦଶଅବତାର ଚିତ୍ର ମଧ୍ୟ ଆଙ୍କନ୍ତି । ସେଥିରେ ବୌଦ୍ଧ ରୂପ ସ୍ଥାନରେ ଜଗନ୍ନାଥ ସ୍ଥାନ ପାଇଥାନ୍ତି । କୋରାପୁଟ ଅଞ୍ଚଳରେ ସ୍ତ୍ରୀଲୋକ-ମାନେ ଦଣ୍ଡାରି ନାଚ କରନ୍ତି । ପୌଷ ପୂର୍ଣ୍ଣିମାରେ ଏହା ହୁଏ । ଏହି ନାଚର ଆସ୍ଥାନ ପାଖରେ ସ୍ତ୍ରୀଲୋକମାନେ ଶିମୂଳଗଛକୁ ଚକଟା-ମାଟିରେ ପୋତି, ତାହାର ମୂଳରେ ନାନାପ୍ରକାର ମୁରୁଜରେ ଚିତ୍ରାଙ୍କନ କରିଥାନ୍ତି । ଏହା ମଧ୍ୟରେ କେତେକ ଚକଟାଳ ମୂର୍ତ୍ତିର ରେଖା ଚିତ୍ର ଅଙ୍କିତ ହେବାର ପରଂପରା ରହିଛି ।



ମାର୍କଣ୍ଡେୟ ପୁରାଣର ସାଧ୍ୱୀକପୋତୀ ଉପାଖ୍ୟାନଟି କାର୍ତ୍ତିକ ବ୍ରତ ମଧ୍ୟରେ ସ୍ଥାନ ପାଇଛି । ସେଥିରେ ଶବର ବ୍ୟାଧ ରୂପରେ କପୋତକୁ ଅଠାକାଠିରେ ଧରିଛି । କପୋତୀ ଶବରର ଶରଣ ପଶି ତାହାକୁ ଛାଡ଼ିଦେବା ପାଇଁ ବିନୟ ଭାବରେ ପ୍ରାର୍ଥନା କରିଛି । କିନ୍ତୁ ଠିକେ ନିଆଁ ଆଣିଦେଲେ ଛାଡ଼ିଦେବ ବୋଲି ଶବର ପ୍ରତିଶ୍ରୁତି ଦେବାରୁ କପୋତୀ ଧାଇଁ ଦୂରରୁ ନିଆଁ ଆଣିଛି । ନିଷ୍ଠୁର ଶବର ଉକ୍ତ ନିଆଁରେ କପୋତକୁ ପୋଡ଼ିବାରୁ କପୋତୀ ନିଜର ସତୀଧର୍ମ ରକ୍ଷାକରି ନିଆଁକୁ ଡେଇଁପଡ଼ିଛି । ସ୍ୱର୍ଗରୁ ପୁଷ୍ପକରଥମାନ ଆସି କପୋତ ଦମ୍ପତ୍ତିଙ୍କୁ ନେଇଯାଇଛନ୍ତି । ସେମାନେ ସ୍ୱର୍ଗରେ ଦୁଇଟି ନକ୍ଷତ୍ର ହୋଇ ରହିଛନ୍ତି । ସେହି ନକ୍ଷତ୍ରଙ୍କୁ ଦର୍ଶନ କଲେ କାର୍ତ୍ତିକ ହବିଷ୍ୟର ଫଳ ମିଳେ । ମୁରୁଜରେ ମଧ୍ୟ କାପ୍ତାକାପ୍ତି ଅଙ୍କନ କରାଯାଇ ଉକ୍ତ ଉପାଖ୍ୟାନଟି ଗୀତ ଆକାରରେ ବୋଲାଯାଇ ଥାଏ—

"ଭର୍ତ୍ତା ଭୁଲେ ଅଗ୍ନି ପସନ୍ତି ନାରୀ<br>
ସେଥିର ଚରିତ ଶୁଣ କୁମାରୀ ।"

(ପଲ୍ଲୀଗୀତ ସଂଚୟନ ୨ୟ ଭାଗ)



ଏ ଦେଶରେ ସତୀ ଦାହ ପ୍ରଥାର ପ୍ରଚଳନ ଥିଲା । ସ୍ୱାମୀର ଶବ ସହିତ ସ୍ତ୍ରୀମାନେ ଚିତାଗ୍ନିରେ ଝାସ ଦେଉଥିଲେ । ସତୀଦାହ ପ୍ରଥାର ଉଚ୍ଛେଦ ପରେ ହୁଏତ ଏହି ସଧବା କପୋତୀ ଉପାଖ୍ୟାନଟି ସୃଷ୍ଟି ହୋଇଛି ଓ ଏହାକୁ ସ୍ମରଣ କରି ବିଧବାମାନେ ପୁଣ୍ୟ ସଂଚୟ କରିବାକୁ ପ୍ରୟାସୀ ହେଉଛନ୍ତି । ଶବରମାନଙ୍କର ଶିକାର ହେଉଛି ବୃତ୍ତି । ଏଣୁ ପକ୍ଷୀ ପ୍ରତି ନିଷ୍ଠୁର ଆଚରଣ କରିବା ସେମାନଙ୍କ ନିକଟରେ ନୂଆକଥା ନୁହେଁ । କଥାରେ ଅଛି, "ନିତି ଶବର ଜୀବନ ମାରେ, ସନ୍ଧ୍ୟା ହେଲେ ଚନ୍ଦ୍ରୀ କରେ ।" କିନ୍ତୁ ଏ କ୍ଷେତ୍ରରେ ଏତିକି ସ୍ମରଣ କରାଯାଇ ପାରେ ଯେ କପୋତ ଯୁଗଳ ହେଉଛି ନିରୀହ ଆତ୍ମାର ପ୍ରତୀକ ଶବର ନିଷ୍ଠୁର କାଳର ପ୍ରତୀକ !

ଭାଦ୍ରବ କୃଷ୍ଣପଞ୍ଚମୀ ଦିନ ( ରକ୍ଷାପଞ୍ଚମୀ ) ଚନ୍ଦ୍ର ପ୍ରତିଷ୍ଠାରେ ମହେଶ୍ୱରଙ୍କୁ ଘଣ୍ଟାକର୍ଣ୍ଣ ଭୈରବ ରୂପରେ ବ୍ରାହ୍ମଣମାନେ ପୂଜା କରୁଥିଲେ । ଏହି ପୂଜା କରାଯାଉ ଥିଲା ନିଜ ଦ୍ୱାର ଓ କବାଟରେ ଚିତା ଓ ମନ୍ତ୍ର ଲେଖି ସମସ୍ତ ପ୍ରକାର ବ୍ୟାଧି ଓ ଉପଦ୍ରବ ନିବାରଣ ପାଇଁ । ଶବରମାନେ ଯେଉଁ ଉଦ୍ଦେଶ୍ୟରେ କିଞ୍ଚୁଙ୍କର ଦଶଟି ରୂପକୁ ପୂଜା କରନ୍ତି, ଆର୍ଯ୍ୟମାନେ ସେହି ଉଦ୍ଦେଶ୍ୟରେ ଘଣ୍ଟାକର୍ଣ୍ଣ ଭୈରବଙ୍କର ପୂଜା କରନ୍ତି । ଉଭୟଙ୍କ କାମନାର ମୂଳ ଲକ୍ଷ୍ୟ ହେଉଛି ସବୁ ବ୍ୟାଧି ନିବାରଣ ଓ ସବୁ ଉପଦ୍ରବ ସଂହାର । ବୋଧହୁଏ ଏହି ଘଣ୍ଟାକର୍ଣ୍ଣ ଭୈରବ ଉପାସନା ଓଡ଼ିଶା ବ୍ୟତୀତ ନେପାଳରେ ମଧ୍ୟ ରହିଛି । ନେପାଳରେ ଏହା ଏକ ପ୍ରଧାନତମ ପର୍ବ ଓ ସେଠାରେ ଘଣ୍ଟାକର୍ଣ୍ଣ ଭୈରବ ମନ୍ଦିର ଅଛି । ଅଧୁନା ଓଡ଼ିଶାରେ ଏହି ଉପାସନା କ୍ରମେ କ୍ରମେ ବ୍ରାହ୍ମଣେତର ସମ୍ପ୍ରଦାୟଙ୍କ ଗୃହକୁ ବ୍ୟାପିଲାଣି । ଏହା ସହିତ ଦଶହରାକୁ ଲେଖା ଯାଉଥିବା ଚିତା ସମ୍ପୃକ୍ତିର ଯୋଗାଯୋଗ ବିଷୟରେ ଅଧିକ ଅନୁଧ୍ୟାନ ଆବଶ୍ୟକ । ଦଶହରାର ଏହି ଚିତା ମଧ୍ୟରେ ଶିବ ତାଣ୍ଡବର ସଙ୍କେତ ବିଦ୍ୟମାନ । ଏଥିରେ ପ୍ରକଟିତ ହୋଇଛି ସୃଷ୍ଟି, ସ୍ଥିତି, ସଂହାର, ତିରୋଭାବ ଓ ଅନୁଗ୍ରହର ଅଭିବ୍ୟକ୍ତି । ଚନ୍ଦ୍ର ସମ୍ବନ୍ଧରେ

ଜୀବନ ଓ ମୃତ୍ୟୁର ସଂକେତ ରୂପେ ଯଥାକ୍ରମେ ଊର୍ଦ୍ଧ୍ୱଭୂମି ଓ ନିମ୍ନଭୂମି ତ୍ରିଭୁଜ ବ୍ୟବହୃତ ହୋଇଥାଏ ଊର୍ଦ୍ଧ୍ୱଭୂମି ସମଦ୍ୱିବାହୁ ତ୍ରିଭୁଜ ବୃକ୍ଷ ବା ଜୀବନର ପ୍ରତୀକ । ସେହିପରି ନିମ୍ନଭୂମି ସମଦ୍ୱିବାହୁ ତ୍ରିଭୁଜ ଅଗ୍ନି ବା ମୃତ୍ୟୁର ପ୍ରତୀକ । ଏହି ସାଙ୍କେତିକତାକୁ ଭିତ୍ତି କରି ଅପସ୍ମାର ପୁରୁଷ ଭଳି ଆବର୍ଜନା ସ୍ତୂପ ଉପରେ ଗୋଟିଏ ତ୍ରିଭୁଜ ଉପରେ ଅନ୍ୟ ଏକ ତ୍ରିଭୁଜ ସ୍ଥାପନ କରି ଭୈରବଙ୍କର ନଟରାଜ ମୂର୍ତ୍ତି କଳ୍ପନା କରାଯାଇଛି, ପ୍ରତ୍ୟେକ ଗୃହିଣୀ ତାଙ୍କ ଘରେ ଏକତ୍ର ଦୁଇଟି ତ୍ରିଭୁଜ ତଳ ଓ ଉପରକୁ ଭୂମି କରି ଲେଖି ତାର ପ୍ରତ୍ୟେକ କୋଣ ଗୋଟିଏ ଗୋଟିଏ ସ୍ୱସ୍ତି ଚିହ୍ନ ବୃତ୍ତ ଦେଇ ଏହି ଚିତ୍ର ଅଙ୍କନ କରନ୍ତି । ଅନ୍ତତଃ ଶୈବ-ଧର୍ମର ଉତ୍ଥାନ ସଙ୍ଗେ ସଙ୍ଗେ ଖ୍ରୀଷ୍ଟପୂର୍ବ ୭ମ ଶତକରୁ ଏହା ପରଂପରା କ୍ରମେ ନାନାପ୍ରକାର ତନ୍ତ୍ର ଓ ମନ୍ତ୍ର ପରେ ଏ ଅବସ୍ଥାରେ ପହଞ୍ଚିଛି ବୋଲି ଅନୁମାନ କରାଯାଇ ପାରେ ।



ଉତ୍କଳର ସମ୍ରାଟ କେବଳ ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ଖାରଧିଖାରବର ନ ଥିଲେ କିମ୍ବା ଉତ୍କଳର ସୀମାରେଖା ଗଙ୍ଗା ଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ନ ଥିଲା । ଉତ୍କଳୀ ଯେଉଁଭଳି ଯୋଦ୍ଧା, ସେହିଭଳି କଳାକୁଶଳୀ ମଧ୍ୟ । ଉତ୍କଳର ମନ୍ଦିର, ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ କାରୁଶିଳ୍ପ ପ୍ରଭୃତି ଏହାର ସାର୍ଥକ ଉଦାହରଣ । ଏହି ସମସ୍ତକୁ ବାଦ-

ଦେଲେ ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ଅକ୍ଷୁଣ୍ଣ ଥିଲା । ଉତ୍କଳୀୟମାନେ ଯାଭା, ବାଲି, ସିଂହଳ ପ୍ରଭୃତି ରାଜ୍ୟରେ ବାଣିଜ୍ୟ କରୁଥିଲେ । କେତେକ ସ୍ଥାନରେ ସେ ଦେଶର କଳା ଓ ସଂସ୍କୃତିକୁ ନିୟନ୍ତ୍ରଣ କରୁଥିଲେ । ଏହାର ଚିହ୍ନ ପରଂପରା କ୍ରମେ ଆମ ସମାଜର ଚଳଣି ଓ ଆଲମ୍ପନକଳା ମଧ୍ୟରେ ଏ ଅବଧି ବଞ୍ଚି ରହିଛି । ପ୍ରାଚୀନ ସଂସ୍କୃତିର ଧାରା ରୂପେ କୁଳବଧୂମାନେ ଏହାକୁ ଧର୍ମାଚାର ମଧ୍ୟରେ ଫୁଟାଉଛନ୍ତି ।

ଭାଦ୍ର ଶୁକ୍ଳ ଚତୁର୍ଥୀଦିନ ପ୍ରତ୍ୟେକ ଓଡ଼ିଆଣୀ ଗୌରୀବ୍ରତ କରନ୍ତି । ଅହୋରାତ୍ର ଉପାସ ରହି, ଜାଗରଜାଳି, ମଣ୍ଡଳକାଟି ଉମା ଓ ମହେଶ୍ୱରଙ୍କର ପୂଜା କରନ୍ତି । ଏଭଳି କଷ୍ଟପୂର୍ଣ୍ଣ ବ୍ରତ ବିରଳ । ବାଲିଦ୍ୱୀପକୁ ବାଣିଜ୍ୟ କରିବାକୁ ଯାଇଥିବା ସାଧବର ମଙ୍ଗଳକାମନା କରି ସାଧବାଣୀ କଷ୍ଟକର ସହିତ ଏହି ବ୍ରତ ରକ୍ଷା କରୁଥିବାରୁ ଏହା ବାଲିତୃତୀୟା ନାମରେ ନାମିତ । ପଣ୍ଡିତ ନୀଳକଣ୍ଠ ଦାସଙ୍କର ଓଡ଼ିଆ ସାହିତ୍ୟର କ୍ରମ ପରିଣାମ ଗ୍ରନ୍ଥରେ ବଙ୍ଗଳାର ଭାତୃଦ୍ୱିତୀୟା ଓ ଓଡ଼ିଶାର ବାଲିତୃତୀୟା ସଂପର୍କରେ ଏକ ତୁଳନାତ୍ମକ ଅଧ୍ୟୟନ ଦିଆଯାଇଛି । ଜଣାଯାଏ ଯେ ସମଗ୍ର ବର୍ଷ ମଧ୍ୟରେ ସାଧବ ଗୋଟିଏ ପକ୍ଷ ମାତ୍ର ସ୍ୱଗୃହରେ ଅବସ୍ଥାନ କରୁଥିଲା । ସେଥିପାଇଁ ଦୀପାବଳୀ ଅମାବାସ୍ୟା ଦିନ ସେ ବାଣିଜ୍ୟ ଶେଷ କରି ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିଲା ଓ କାର୍ତ୍ତିକ ପୂର୍ଣ୍ଣିମାଦିନ ପାହାନ୍ତାରୁ ପୁନର୍ବାର ବୋଇତରେ ଯାତ୍ରା କରୁଥିଲା । ଏହି ବୋଇତ ଏବେ ନାମକୁ ମାତ୍ର ଶୋଲରେ କିମ୍ବା କଦଳୀବାସୁଙ୍ଗାରେ ତିଆରି କରି ଭସାଇ ଦେଇ ପ୍ରତ୍ୟେକ ଗୃହିଣୀ ଆ—କା—ମା—ବୈ ସ୍ନାନ କରନ୍ତି । ଏହାପରି ଏକ ସ୍ନାନ ବୈଶାଖ ପୂର୍ଣ୍ଣିମାଦିନ କରାଯାଉଥିଲା ବୋଲି ସାରଳା ଦାସଙ୍କ ମହାଭାରତରେ ଉଲ୍ଲେଖ ଅଛି—

“ବଇଶାଖ ମାସ ଶେଷ ପୂର୍ଣ୍ଣିମା ଯେ ତିଥି
ଅନୁରାଧା ନକ୍ଷେତ୍ର ଯେ ବାର ବୃହସ୍ପତି

ଆକାଶ ବଇ ସ୍ନାନ କରିବା ନିମନ୍ତେ
ପୁଣ୍ୟତୋୟା ନଦୀ କୂଳେ ଯାନ୍ତି ପଞ୍ଚଭ୍ରାତେ ।
( ଆଦ୍ୟପର୍ବ )

ଗୃହକୁ ପ୍ରତ୍ୟାବର୍ତ୍ତନ କଲା ପରେ ପ୍ରତ୍ୟେକ ସାଧବ କାର୍ତ୍ତିକ ଅମାବାସ୍ୟା ଦିନ ବଶ୍ରୁ, ଦକ୍ଷ, ବସୁ, ସତ୍ୟ, କାଳ, କାମ, ଧୂରି, ଲୋଚନ, ପୁରୁରବା ଓ ମାଦ୍ରବ ପ୍ରଭୃତି ଦଶ ବିଶ୍ୱଦେବା, ସନକ, ସନନ୍ଦ, ସନାତନ, କପିଳ, ଆସୁରି, ବୋଢୁ ଓ ପଞ୍ଚଶିଖା ପ୍ରଭୃତି ଆଦି ମାନବଙ୍କ ସହିତ ପିତୃକୁଳ ଓ ମାତୃକୁଳର ତିନି ପୁରୁଷଙ୍କୁ ଏକତ୍ର ଶ୍ରାଦ୍ଧ ଓ ଦୀପଦାନ କରୁଥିଲେ । ଐତିହାସିକ ସତ୍ୟପାଷ କରଙ୍କ ମତରେ—
"ଏହି ଦିନ ରାତିରେ ପ୍ରତ୍ୟେକ ଗୃହିଣୀ ନିଜ ନିଜ ଗୃହର ଅଗଣାରେ ଖଡ଼ିପଥରର ଚୂନ ବା ମୁରୁଜ ଦ୍ୱାରା ଗୋଟିଏ ଗୋଟିଏ ବୋଇତ ବା ଜାହାଜର ଚିତ୍ର ଲେଖନ୍ତି । ତତ୍ପରେ ଗୃହର ସମସ୍ତ ଆସବାବପତ୍ର ନେଇ ଏହି ଚିତ୍ରାଙ୍କିତ ଜାହାଜ ଉପରେ ରଖନ୍ତି । ପ୍ରାତଃକାଳରେ ଗୃହର ସ୍ତ୍ରୀମାନେ ଏହି ଚିତ୍ରାଙ୍କିତ ଜାହାଜକୁ ବନ୍ଦାପନା କରନ୍ତି । ସେମାନଙ୍କର ବିଶ୍ୱାସ, ପ୍ରତିବର୍ଷ ଏହିଦିନ ଏହି ପ୍ରଥା ଅନୁସରଣ କଲେ ଗୃହରେ ଧନ ବୃଦ୍ଧି ହୁଏ ।"

( ପ୍ରାଚୀନ ଉତ୍କଳରେ ଜଳ ଯାତ୍ରା—୨ୟ ଭାଗ )



ଏହା ବ୍ୟତୀତ କଥିତ ଅଛି ଉତ୍କଳୀୟ ରାଜବଂଶ ଯୁବକ ବିଜୟସିଂହ ସିଂହଳରେ ରାଜପଣ କରୁଥିଲେ ଓ ତାଙ୍କର ନାମାନୁସାରେ

ଲଙ୍କାଦ୍ୱୀପର ନାମ ସିଂହଳ ହୋଇଛି । ଆଜି ଏହି ବିଜୟ ସିଂହଙ୍କ ଉପାଖ୍ୟାନଟି ଅଧା ଇତିହାସ ଓ ଅଧା କିମ୍ବଦନ୍ତୀ ମଧ୍ୟରେ ଅବଲୁପ୍ତ । ତାଙ୍କର ପିତାମହୀ ଥିଲେ କଳିଙ୍ଗର ରାଜକନ୍ୟା ଓ ତାଙ୍କର ବିବାହ ବଙ୍ଗର ଜଣେ ରାଜପୁତ୍ରଙ୍କ ସହିତ ହୋଇଥିଲା । ଏହି ବିବାହ ବନ୍ଧନରୁ ଯେଉଁ କନ୍ୟା ଜନ୍ମିଥିଲା ସେ ହେଉଛି ବିଜୟ ସିଂହଙ୍କର ଜନ୍ମଦାତ୍ରୀ ଜନନୀ । କିମ୍ବଦନ୍ତୀ ଅନୁସାରେ କୁମାରୀ କାଳରେ ବିଜୟ ସିଂହଙ୍କର ଜନନୀ ନିଜର ମାତୁଳାଳୟରୁ ଏକଦା ଲାଟଦେଶ ମଧ୍ୟରେ ବଙ୍ଗଦେଶକୁ ଯାଉଥିଲେ । ଏହି ସମୟରେ ଲାଟଦେଶର ରାଜା ସିଂହବାହୁ ତାଙ୍କୁ ବଳାତ୍କାରରେ ଅପହରଣ କରି ବିବାହ କରିଥିଲେ । ବର୍ତ୍ତମାନର ସିଂହ-ଭୂମି ସମେତ ଛୋଟ ନାଗପୁର ଅଞ୍ଚଳକୁ ସେ କାଳର ଲାଟଦେଶ କୁହାଯାଉଥିଲା । ଏହା ବୃହତ୍ତର କଳିଙ୍ଗର ଅନ୍ତର୍ଗତ ଥିଲା । ବିଜୟ ସିଂହ ହେଉଛନ୍ତି ସିଂହବାହୁଙ୍କର ସନ୍ତାନ । ଏହା ହୁଏତ ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀର କାହାଣୀ । ସୁସାହିତ୍ୟିକ ସୁରେନ୍ଦ୍ର ମହାନ୍ତିଙ୍କର ଲେଖାରୁ ଜଣାଯାଏ—"ଏବେ ସୁଦ୍ଧା ସିଂହଭୂମିରେ କେଉଁଠି କେଉଁଠି ପ୍ରତି ଆଶ୍ୱିନ ମାସରେ 'ଶୁଭସଥୀ' ପୂଜା ହୁଏ । ଏହି ପୂଜା ଉପଲକ୍ଷେ କୁଳବଧୂମାନେ କାନ୍ଥରେ ବିଜୟ ସିଂହଙ୍କର ସିଂହଳ ଯାତ୍ରାର ଚିତ୍ର ଚିତାରେ ଲେଖନ୍ତି । ଏହି ପୂଜାରେ ଯେଉଁ ଓଡ଼ିଆ ପୋଥି ବୋଲାଯାଏ ସେଥିରେ ସୁବର୍ଣ୍ଣରେଖା ନଦୀବାଟେ ସମୁଦ୍ରରେ ବିଜୟ ସିଂହଙ୍କର ସିଂହଳ ଯାତ୍ରାର କାହାଣୀ ବର୍ଣ୍ଣିତ ଅଛି ।"

( ଉତ୍କଳ ଯୁଗେ ଯୁଗେ—ପୃ ୨୫ )

ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ମତରେ ସିଂହଭୂମିର କୁମ୍ଭକାର-ମାନେ "ଶ୍ରୀସ୍ୱବନାଥୀ ବ୍ରତ" କରନ୍ତି । ଏଥିରେ ସମୁଦ୍ର ଯାତ୍ରା ଓ ନୂତ ଅଭିଯାନର ସଙ୍କେତ ମିଳେ । ଏହି ଉପଲକ୍ଷେ କାନ୍ଥରେ ନୂଠୁଣିବୋଇତ ଓ ତିଳେଣି ବୋଇତ ଇତ୍ୟାଦି ବୋଇତର ଚିତ୍ର ଲେଖା ଯାଇଥାଏ । ଶ୍ରୀଯୁକ୍ତ ଦାଶ ଏହି ବ୍ରତ ସମ୍ପର୍କରେ ତାଙ୍କର "ଓଡ଼ିଆ ଲୋକ ଗୀତ ଓ କାହାଣୀ" ଗ୍ରନ୍ଥର ୫୦୪ ଓ ୬୦୫ ପୃଷ୍ଠାରେ ବିଶଦ ବର୍ଣ୍ଣନା କରିଛନ୍ତି ।

ଶ୍ରୀ ସୂର୍ଯ୍ୟନୋଥୀ ବ୍ରତ ଓ ଶୁଭପର୍ଥା ବ୍ରତ ବୋଟବ୍ରତ ବା ଓଷାର ଅନ୍ତର୍ଗତ ବୋଲି ଅନୁମାନ କରିବାକୁ ହେବ ।

ପଚେଞ୍ଜଣୀ ବଙ୍ଗଦେଶରେ ଭାଦ୍ରବ ମାସରେ ଭାଦୁଲିବ୍ରତ ଆରମ୍ଭ ହୋଇଥାଏ । ଏଥିରେ ଭାଦୁଲିର ମୂର୍ତ୍ତି, ଛବି, ନୌକା, ନଦୀ, ସମୁଦ୍ର ଇତ୍ୟାଦିର ଚିତ୍ର ଲେଖାଯାଏ । ଆତ୍ମୀୟସ୍ୱଜନମାନେ ବିଦେଶଯାତ୍ରାରୁ, ସମୁଦ୍ରଯାତ୍ରାରୁ ଜଳପଥ ଓ ସ୍ଥଳପଥରେ କପରି ନିରାପଦରେ ପ୍ରତ୍ୟାବର୍ତ୍ତନ କରିବେ ତାହାର ଇଚ୍ଛାକାମନା ହିଁ ଏହା ମଧ୍ୟରେ ରୂପାୟିତ ହୋଇଛି । ଏଥିରେ ସ୍ତ୍ରୀଲୋକମାନେ ଗୀତ ବୋଲିଥାନ୍ତି—

"ନଦୀ ନଦୀ କୋଥାୟ ଯାଓ
ବାପ ଭାୟେର ବାର୍ତ୍ତା ଦାଓ !"

ଆମ ଓଡ଼ିଶାରେ ଏହିପରି ଅର୍ଚ୍ଚନା କରାଯାଏ, ଯେତେବେଳେ କାର୍ତ୍ତିକପୂର୍ଣ୍ଣିମାର ପ୍ରତ୍ୟୁଷରୁ ବୋଇତ ଭସାଇ ଦିଆଯାଏ—

"ଆ କା ମା ବୈ
ପାନ ଗୁଆ ଖାଇ
ତୋ ପାନ ଗୁଆ ତୋର
ମାସକ ଧରମ ମୋର !"

ଗଞ୍ଜାମ ଜିଲ୍ଲା ଓ ପୁରୀ ଜିଲ୍ଲାର କେତେକ ଅଞ୍ଚଳରେ "ଦକ୍ଷିଣାସଂକ୍ରାନ୍ତି" ଓଷା କରାଯାଏ । ଏହି ଓଷା ମହିଳାମାନେ କର୍କଟ ସଂକ୍ରାନ୍ତି ଦିନ କରନ୍ତି । ସୂର୍ଯ୍ୟ ଏହି ଦିନ ଠାରୁ ଦକ୍ଷିଣାୟନ ହେଉଥିବାରୁ ଏହାକୁ ଦକ୍ଷିଣା ସଂକ୍ରାନ୍ତି କୁହାଯାଏ ବୋଲି ଅନୁମାନ କରାଯାଉଛି । ସାଧାରଣତଃ ମହିଳାମାନେ ଏହି ଉପଲକ୍ଷେ କାନ୍ଥ ଦେହରେ ଏକ ମଣ୍ଡପର ଚିତ୍ର କରନ୍ତି । ମଣ୍ଡପ ବା କୋଠିର ଉପରେ ଧ୍ୱଜ, କଳସ ଓ ହସ୍ତୀର ଚିତ୍ର ଅଙ୍କିତ ହୁଏ । ମଣ୍ଡପର ପାଦ ଦେଶରେ ପାଦଚିହ୍ନ ଓ ପାର୍ଶ୍ୱରେ କର୍ଣ୍ଣିକ ଅଙ୍କିତ ହୁଏ । ଏହି କର୍ଣ୍ଣିକ ସମ୍ଭବତ ଦଶହରା ପର୍ବରେ

ଦେଖାଯାଇଥିବା ଆଚାର ଯଥେଷ୍ଟ ସମତା ରହିଛି । ମଣ୍ଡପକୁ ବୃତ୍ତଭାଗରେ ଷୋହଳଗୋଟି କୋଠିରେ ବିଭକ୍ତ କରି ତହିଁ ମଧ୍ୟରେ ଭିନ୍ନ ଭିନ୍ନ ଧରଣର ଷୋହଳଗୋଟି ପଦ୍ମର ଚିତ୍ରାଙ୍କନ କରାଯାଏ । ଅବଶିଷ୍ଟ ସ୍ଥଳରେ ଅଳଙ୍କାରମାନ ଅଙ୍କିତ ହୁଏ । ମଣ୍ଡପର ପାର୍ଶ୍ୱରେ ଶସ୍ୟ ଅମାର, ଓଳିଆ, ଗୋରୁ ପ୍ରଭୃତିର ଚିତ୍ର ଅଙ୍କନ କରାଯାଇଥାଏ । ଏହି ପ୍ରଥା ପଶ୍ଚାତ କୃଷି ଉତ୍ସବର ମୂଳକ ନିହିତ ଅଛି କହିଲେ ଅତ୍ୟୁକ୍ତି ହେବ ନାହିଁ, ଦକ୍ଷିଣ ଓଡ଼ିଶାର ଏହା ଏକ ପ୍ରଚଳିତ ପରଂପରା ।

ଚିତା ଲେଖାର ଚଳଣି ସମଗ୍ର ଭାରତରେ ଅଛି । ପ୍ରତ୍ୟେକ ଅଞ୍ଚଳର ନାରୀ ସମାଜ ବିଭିନ୍ନ ପର୍ବପର୍ବାଣୀ ଓ ଅନୁଷ୍ଠାନରେ ବିଭିନ୍ନ ଧରଣର ଚିତା ଲେଖନ୍ତି କିମ୍ବା ମୁରୁଜ ପକାନ୍ତି । ଏହାକୁ ନାନାବିଧ ଉପାୟରେ ମଧ୍ୟ କରନ୍ତି । ଆଞ୍ଚଳିକ ଭେଦରେ ସେଗୁଡ଼ିକର ବୈଶିଷ୍ଟ୍ୟ ଓ ପରଂପରା ସୂଚିତ ହୋଇଥାଏ । ସମଗ୍ର ଭାରତର ଚିତା ଓ ମୁରୁଜର ଏକ ସଙ୍କଳନ କରାଗଲେ ଏହି ବୈଶିଷ୍ଟ୍ୟ ସହଜରେ ଆଖିରେ ପଡ଼ିପାରିବ । ଭିନ୍ନ ଭିନ୍ନ ଅଞ୍ଚଳରେ ମଧ୍ୟ ଏହାର ନାମ ଭିନ୍ନ ଭିନ୍ନ ହୋଇଅଛି । ଓଡ଼ିଶାରେ ଝୋଟି ଓ ମୁରୁଜ କହୁଥିବା ସମୟରେ ବଙ୍ଗଳାରେ ଆଲ୍ପନା, ବିହାର ଓ ଉତ୍ତରପ୍ରଦେଶରେ ଆରିପନା, ରାଜସ୍ଥାନ ଓ ମଧ୍ୟପ୍ରଦେଶରେ ମଣ୍ଡନ, ଗୁଜରାଟ ଓ ମହାରାଷ୍ଟ୍ରରେ ରଙ୍ଗୋଲି ଓ ଦାକ୍ଷିଣାତ୍ୟରେ କୋଲମ କହନ୍ତି । କିନ୍ତୁ ପ୍ରତ୍ୟେକର ଅନ୍ତର୍ନିହିତ ଉଦ୍ଦେଶ୍ୟ ଓ ପରମ୍ପରା ଗୋଟିଏ । ସମସ୍ତ ପ୍ରକାର ପ୍ରାକୃତିକ, ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ପରିବର୍ତ୍ତନ ମଧ୍ୟରେ ଆମର ନାରୀସମାଜ ତାହାକୁ ବଞ୍ଚାଇ ରଖିଛି ।





# ଲୋକଚିତ୍ରରେ ପଶୁ ଓ ପକ୍ଷୀର ସ୍ଥାନ

ମଣିଷହିଁ ମଣିଷର ସବୁଠାରୁ ନିକଟତମ ଜୀବ । ମଣିଷ ସମ୍ବନ୍ଧରେ ମଣିଷର ଅନୁସନ୍ଧିତ୍ସାର ଅନ୍ତ ନାହିଁ । ସେ ନିଜକୁ ଓ ନିଜର ନିକଟତମ ପ୍ରତିବେଶୀମାନଙ୍କୁ ପ୍ରତ୍ୟେକ ମୁହୂର୍ତ୍ତରେ ନିଘାରି ଦେଖୁଛି । ଯେତିକି ଅଧିକ ଦେଖୁଛି, ସେତିକି ପରିମାଣରେ ଦୋଷ, ତ୍ରୁଟି ଓ ଦୁର୍ବଳତା ତାର ଆଖିରେ ପଡ଼ୁଛି । ସେତିକି ପରିମାଣରେ ମଧ୍ୟ ବୈଚିତ୍ର୍ୟ ଅନୁଭବ କରୁଛି । ଶେଷକୁ କହୁଛି, ନର ମାୟା ବିଧାତାଙ୍କୁ ଅଗୋଚର ।

ମଣିଷ ସମାଜ ମଧ୍ୟରେ ବୈଚିତ୍ର୍ୟର ମାତ୍ରା ଏତେ ଅଧିକ ସୁସ୍ପଷ୍ଟ ଯେ ରୂପ ରଚନା କ୍ଷେତ୍ରରେ କେହି କେବେ ହେଲେ ମଣିଷକୁ ଆଦର୍ଶ ସ୍ଥାୟୀ ରୂପ ବୋଲି ଗ୍ରହଣ କରି ନାହିଁ । ପ୍ରତ୍ୟେକ ମଣିଷର ରୂପ ଅନ୍ୟଠାରୁ ସ୍ୱତନ୍ତ୍ର । ପ୍ରତ୍ୟେକ ମଣିଷର ଚରିତ୍ର ଅନ୍ୟଠାରୁ ପୃଥକ । କିନ୍ତୁ ଅରଣ୍ୟ-ଉଦ୍ୟାନବାସୀ ମାନବେତର ପଶୁ, ପକ୍ଷୀ, ପୁଷ୍ପ, ପଲ୍ଲବ, ବୃକ୍ଷ ଓ ଲତା ପ୍ରଭୃତି ମଧ୍ୟରେ ଥିବା ସୂକ୍ଷ୍ମାତିସୂକ୍ଷ୍ମ ପାର୍ଥକ୍ୟ ସହଜରେ ଆଖିରେ ପଡ଼େ ନାହିଁ । ସେଗୁଡ଼ିକର ରୂପ ଅନେକାଂଶରେ ସ୍ଥିର ବୋଲି ମନେହୁଏ । ସେଗୁଡ଼ିକ ମଧ୍ୟରେ ମଣିଷ ଭଳି ବିଶେଷ ତାରତମ୍ୟ

ନାହିଁ । ସେଥିପାଇଁ ବୋଧହୁଏ ଲୋକଶିଳ୍ପୀ ମଣିଷ ଠାରୁ ମାନବେତର ପଶୁ, ପକ୍ଷୀ, ପୁଷ୍ପ, ପଞ୍ଜର, ଲତା ଓ ବୃକ୍ଷକୁ ଅଧିକ ଆଦର୍ଶସ୍ଥାନୀୟ ମନେ କରନ୍ତି ଓ ନିଜର ରୂପ ରଚନା କ୍ଷେତ୍ରରେ ସେଗୁଡ଼ିକୁ ଆଗ୍ରହର ସହିତ ସ୍ଥାନ ଦେଇଛି । ମୁଁ କହୁନାହିଁ ଯେ ଲୋକଚିତ୍ରରେ ମଣିଷର ଚିତ୍ର ଆଦୌ ଅଙ୍କିତ ହୁଏ ନାହିଁ ବୋଲି । ମଣିଷର ଚିତ୍ର ନିଶ୍ଚୟ ଅଙ୍କିତ ହୋଇଥାଏ । କିନ୍ତୁ ତାହାର ତୁଳନାରେ ତାହା ଠାରୁ ତୁଚ୍ଛ ଜୀବ-ଜଗତର ପରିଣାମ ଅଧିକ ।

ଆଦିମ ଯୁଗର ଚିତ୍ରକଳା ମଧ୍ୟରେ ପଶୁ ଓ ପକ୍ଷୀର ଚିତ୍ର ଯଥେଷ୍ଟ ପରିମାଣରେ ଦେଖାଯାଏ । ଏହାର ଉଦାହରଣ ଖୋଜିବାର ଆବଶ୍ୟ-କତା ଏବେ ଆଉ ନାହିଁ । ଆଲଟାମିରାର ଗୁମ୍ଫା କାନ୍ଥରେ ଥିବା ବାଇସନ୍ ଓ ହରିଣ ପ୍ରଭୃତିର ଚିତ୍ର ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରିପାରିଛି । ମଧ୍ୟପ୍ରଦେଶର ସିଂହନ୍‌ପୁର ଓ ଉତ୍ତରପ୍ରଦେଶର ମିର୍ଜାପୁର ଠାରେ କେତେକ ଗୁମ୍ଫାଚିତ୍ରର ସନ୍ଧାନ ମିଳିଛି । ଏହା ଭାରତବର୍ଷର ଆଦିମ ଅଧିବାସୀମାନଙ୍କ ଦ୍ୱାରା ଚିତ୍ରିତ ବୋଲି କୁହାଯାଉଛି । ଏହି ଚିତ୍ରରେ ହରିଣ ଓ ସମ୍ବର ପ୍ରଭୃତି ପଶୁମାନେ ଅଗ୍ରାଧିକାର ପାଇଛନ୍ତି । ଏହି ଆଦିମ ଚିତ୍ର ଓ ବର୍ତ୍ତମାନର ଲୋକଚିତ୍ର ସମପର୍ଯ୍ୟାୟଭୁକ୍ତ ନୁହେଁ । ବହୁ ପତନ ଓ ଉତ୍ଥାନ ମଧ୍ୟରେ ଗତି କରିଥିବା ସଭ୍ୟତା ଓ ସଂସ୍କୃତି ସହିତ ଆଦିମ ଆବୃତ୍ତି ଓ ଅନୁଷ୍ଠାନର ଭଗ୍ନାଂଶ ମିଶି ବର୍ତ୍ତମାନର ଲୋକଚିତ୍ରକୁ ଅଲୌକିକ ରୂପ ପ୍ରଦାନ କରିଛି ।

ଲୋକଚିତ୍ରର ପ୍ରଧାନତମ ସ୍ରଷ୍ଟା ଗାଁ ଗହଳର ନାରୀସମାଜ । ସେମାନେ ପ୍ରତ୍ୟେକ ଅବସର ସମୟରେ ଅବଲୀଳା କ୍ରମେ କିଛି କିଛି ରୂପ ସୃଷ୍ଟି କରନ୍ତି । ସେ ସବୁକୁ ଏକତ୍ର କରି ଦେଖିଲେ ମନେହୁଏ ପ୍ରତ୍ୟେକ ସୃଷ୍ଟି ସ୍ୱୟଂଭୂ ଓ ସ୍ୱୟଂ ସମ୍ପୂର୍ଣ୍ଣ । ଲୋକଚିତ୍ରରେ ସୂକ୍ଷ୍ମ ରେଖାଙ୍କନ କୈାଶଳ୍ୟର ପରାକାଷ୍ଠା ଦେଖାଇବା ପାଇଁ ସୁବିଧା ନ ଥାଏ ।

ସୁଯୋଗ ମଧ୍ୟ ନ ଥାଏ । ଏଣୁ ଯେଉଁ ରୂପ ସଂପର୍କରେ କଳ୍ପନା କରାଯାଏ, ତାହାର ସରଳ ସୁନ୍ଦର, ସାବଲୀଳ ଭଙ୍ଗୀଟିକୁ ହିଁ ଆଭାସ, ଛନ୍ଦ ଓ ରୂପକ ସାହାଯ୍ୟରେ ଅଙ୍କନ କରିବାକୁ ହୋଇଥାଏ । ଆମ ଓଡ଼ିଶାରେ ଲୋକଚିତ୍ର ସଂଗ୍ରହର କାର୍ଯ୍ୟ ଏପର୍ଯ୍ୟନ୍ତ ଆରମ୍ଭ ହୋଇ ନାହିଁ । ପ୍ରତ୍ୟେକ ଅଞ୍ଚଳର ଭିନ୍ନଭିନ୍ନ ପରିବେଶକୁ ଯେପରି ଭିନ୍ନଭିନ୍ନ ରୂପର ସୌରଭ ଏପର୍ଯ୍ୟନ୍ତ ସଂସ୍କୃତିପ୍ରେମୀ ଓ ନୃତତ୍ତ୍ୱବିତ୍‌ମାନଙ୍କୁ ଆକର୍ଷଣ କରି ନାହିଁ । ମୋ ଦୃଷ୍ଟିକୁ ଯେତିକି ଆସିଛି, ସେଥିରୁ ମୁଁ ଅନୁମାନ କରି କହୁଛି, ପଶୁ ପକ୍ଷୀ ମାନଙ୍କର ବହୁ ବିଚିତ୍ର ରୂପ ଆମର ଲୋକଚିତ୍ର ମଧ୍ୟରେ ଅବଲୀଳା କ୍ରମେ ପ୍ରକାଶିତ ହୋଇପାରୁଛି । ଉଗ୍ର ଆଧୁନିକତା, ଅଶିକ୍ଷା, ଅନାଦର, ଅଜ୍ଞାତ ଓ ଉଦାସୀନତା ମଧ୍ୟରେ ଏହା କ୍ରମିକ ଅବକ୍ଷୟ ପଥରେ ଗତି କରୁଛି । ଏହାର ବ୍ୟାପକ ଅନୁଶୀଳନ ଆବଶ୍ୟକ ।

ଗୋଟିଏ କିମ୍ବଦନ୍ତୀ ଅଛି । ଏକଦା ଚିତ୍ରକାର ଘରର ବୋହୂ ନଦୀକୁ ଜଳ ଆଣି ଯାଉଥିଲା । ଆଣ୍ଠୁଏ ପାଣିକୁ ପଶିଯାଇଁ କଳସୀଟି ଜଳରେ ବୁଡ଼ାଉଥିବା ସମୟରେ ସେ ଦେଖିଲା ଗଗନ ମାର୍ଗରେ ଏକ ବିରାଟକାୟ ଜନ୍ତୁ ସ୍ୱର୍ଗକୁ ଉଡ଼ି ଯାଉଛି । କୌତୂହଳ ହୋଇ ତାର ରୂପ କଣ୍ଠବର୍ତ୍ତୀ କରି ମାଟିଆ ଦେହରେ ଆଙ୍କି ଆଣିଲା । ଘରକୁ ଫେରିଆସି ନିଜର ସ୍ୱାମୀଙ୍କ ଦ୍ୱାରା ଠିକ୍ କରାଇନେଲା ତାହା ସିଂହ ନାମକ ଜନ୍ତୁ । ଲୋକ ମନର ବିଶ୍ୱାସ ପୂର୍ବେ ଓଡ଼ିଶାରେ ସିଂହ ବାସ କରୁଥିଲେ । କଳିଯୁଗର ଆଗମନ ଦେଖିକରି ସେମାନେ ମର୍ତ୍ତ୍ୟପୁର ତ୍ୟାଗ କରି ସ୍ୱର୍ଗକୁ ଉଡ଼ି ଯାଉଛନ୍ତି । ସ୍ୱର୍ଗକୁ ଉଡ଼ି ଯାଉଥିବା ସମୟରେ ଚିତ୍ରକାର ଘରର ଭୂଆସୁଣୀ ଯେଉଁ ରୂପକୁ ଆଙ୍କି ଆଣିଛି, ତାହା ହିଁ ଚିତ୍ରିତ ସିଂହ ରୂପେ ଉତ୍କଳୀୟ ଚିତ୍ରକଳାରେ ସ୍ଥାନ ପାଇଛି । ଉତ୍କଳୀୟ ପାରଂପରିକ ଚିତ୍ରକଳାରେ ଯେଉଁ ସିଂହ ଅଙ୍କିତ ହୁଏ କିମ୍ବା ପ୍ରସ୍ତର ଶିଳ୍ପରେ ଯେଉଁ ସିଂହର ମୂର୍ତ୍ତି ଖୋଦିତ ହୋଇଛି ଏଗୁଡ଼ିକ ବାସ୍ତବ ସିଂହର ଅବିକଳ ଅନୁକରଣ ନୁହେଁ । ସିଂହର ନାସିକା, କେଶ, ଚକ୍ଷୁ ଓ ଭୟାଳତା ପ୍ରଭୃତି ବାସ୍ତବର ଅନୁଗାମୀ ନୁହେଁ । ସେହିପରି ଅନ୍ୟ ଏକ କାହାଣୀ ଶୁଣାଯାଏ

ରାଜା ଓ ରାଣୀଙ୍କୁ ଦେଲେ । ଜ୍ୟୋତିଷ ଭବିଷ୍ୟତ ବାଣୀ କରିଥିଲା, ମଧ୍ୟରାତ୍ରୀ ସମୟରେ ରାଜା ଏକ ବ୍ୟାଘ୍ର ଦ୍ୱାରା ନିହତ ହେବେ । ଏଥିରେ କେବଳ ରାଜପ୍ରାସାଦର ନୁହେଁ ସମଗ୍ର ରାଜ୍ୟରେ ମଧ୍ୟ ବିଶୃଙ୍ଖଳା ଖେଳିଗଲା । ବ୍ୟାଘ୍ରର ଉପଦ୍ରବରୁ ରକ୍ଷା ପାଇବା ପାଇଁ ରାଜା ସତର୍କ ହେଲେ । ସେହି ଅନୁସାରେ ନୂତନ ନଗର ନିର୍ମାଣ କଲେ । ସବୁ ଦିଗରେ ସଦା ଜାଗ୍ରତ ପ୍ରହରୀର ବ୍ୟବସ୍ଥା କଲେ । କିନ୍ତୁ ମଧ୍ୟରାତ୍ରୀର ଶେଷ ପ୍ରହରକୁ ନିଜର ତରୁଣୀ ବଧୂ ନିକଟରେ ଜ୍ୟୋତିଷର ଭବିଷ୍ୟତବାଣୀ ରାଜା ପ୍ରକାଶ କରିଦେଲେ । ରାଣୀ ପୂର୍ବରୁ କେବେ ବ୍ୟାଘ୍ର ରୂପ ଦେଖି ନ ଥିଲେ । ବ୍ୟାଘ୍ରର ଭଳି ଭୟଙ୍କର ଜନ୍ତୁ ସେ କଳ୍ପନା କରି ପାରିଲେ ନାହିଁ । ତାଙ୍କର କୌତୁହଳ ଦୂରକରିବା ପାଇଁ ରାଜା କାନ୍ଥରେ କଜ୍ଜଳବର୍ତ୍ତୀ ଦ୍ୱାରା ବ୍ୟାଘ୍ରର ଚିତ୍ରଟିଏ ଅଙ୍କନ କଲେ । ପରକ୍ଷଣରେ ସେହି ଚିତ୍ରିତ ବ୍ୟାଘ୍ରର ଚିତ୍ରନ୍ତିକନ କଲା ପରେ ତାହା ଜୀବନ ପାଇ ରାଜାଙ୍କର ପ୍ରାଣ ନାଶ କଲା ।

ଉପରୋକ୍ତ ଗଳ୍ପ ଦୁଇଟିକୁ ସତ୍ୟାସତ୍ୟ ଦିଗରୁ ବିଚାର କରିବାର ପ୍ରଶ୍ନ ଆଦୌ ଉଠୁ ନାହିଁ । ଏଥିରେ ସତ୍ୟତାର ସଂକେତ ଆଦୌ ନାହିଁ କହିଲେ ଚଳେ । କିନ୍ତୁ ରହସ୍ୟମୟ ଶୌର୍ଯ୍ୟବାନ ଭୟାନକ ପଶୁମାନଙ୍କ ସମ୍ପର୍କରେ ଲୋକଚିତ୍ତ ଯେ କୌତୁହଳୋଦ୍ଦୀପକ ଗଳ୍ପ ସୃଷ୍ଟି କରିଛି, ସେଥିରେ ଅଣୁମାତ୍ର ସନ୍ଦେହର ଅବକାଶ ନାହିଁ । ସେହି କୌତୁହଳୀ ଦୃଷ୍ଟିକୁ ଦେଇ ସେ ସିଂହ ଓ ବ୍ୟାଘ୍ରର ମୁଦ୍ରା ( Motif ) ଅଙ୍କନ କରିଛି । ସିଂହ ଓ ବ୍ୟାଘ୍ର ଉଭୟ ସତ୍ୟ ; ଉଭୟ ନିଜ ନିଜର ସ୍ୱାଭାବିକ ପରିବେଶ ମଧ୍ୟରେ ଦୁର୍ଦ୍ଦାନ୍ତ ଓ ହିଂସ୍ର ଜୀବନ୍ତ ପ୍ରତୀକ । କିନ୍ତୁ ପ୍ରକୃତ ଶୌର୍ଯ୍ୟ ଓ ପରାକ୍ରମ ଦୃଷ୍ଟିରୁ ସିଂହ ଓ ବ୍ୟାଘ୍ର ଯେଉଁପରି ଭୟଙ୍କର, ଲୋକଚିତ୍ତର ସଙ୍କିର୍ଣ୍ଣ ପରିସର ଓ ପରିବେଶ ମଧ୍ୟରେ କେବଳ ତାହାଠାରୁ ଅଧିକ ଭୟଙ୍କର ରୂପେ ଚିତ୍ରିତ ହୋଇଥାଏ । ସେଥିପାଇଁ ଗୋପଲୀଳା କନ୍ୟା କୁଣ୍ଢାଇ ନାଚ ପ୍ରଦର୍ଶନ ସମୟରେ ଯେତେବେଳେ ବ୍ୟାଘ୍ର ପାଣି ପିଇବାକୁ ବାହାରେ ସେତେବେଳେ ପ୍ରଦର୍ଶନ ଚିତ୍କାର କରି ଉଠେ—

"ଭାଇ ହେ, ବେଗେ ବାଘକୁ ମାର
ବାଘକୁ ମାରିଲେ କରିବା ଘର ।"

ଏଥିରୁ ସୂଚିତ ହେଉଛି ଯେ, ବ୍ୟାଘ୍ର ଭଳି ପରାକ୍ରମୀ ଓ ବିପଦ-ପୂର୍ଣ୍ଣ ଦୁର୍ଦ୍ଦାନ୍ତ ଜୀବକୁ ହତ୍ୟା ନ କରିବା ପର୍ଯ୍ୟନ୍ତ ନିରାପଦ ଭାବରେ ଘରସଂସାର କରିହୋଇ ପାରିବ ନାହିଁ । ଆଦିବାସୀମାନଙ୍କ ସମାଜରେ ବ୍ୟାଘ୍ରକୁ ପୂର୍ବପୁରୁଷଙ୍କ ପ୍ରେତାତ୍ମାର ପ୍ରତୀକ ରୂପେ ବିଶ୍ୱାସ କରିଥାନ୍ତି । ବାଘ ଭଳି ଅନ୍ୟ ସହଜ କରିପାରେ ନାହିଁ । ଆଉ ଗୋଟିଏ କଥା ମନେ ରଖିବାକୁ ହେବ । ରଜାଙ୍କ ଠାରୁ ଆରମ୍ଭ କରି ଶବରର ଗୃହର ବଧୂ ପର୍ଯ୍ୟନ୍ତ ଚିତ୍ରାଙ୍କନ କରିପାରୁ ଥିଲେ । ଉପରର କାହାଣୀ ଦୁଇଟିରୁ ଏହା ମଧ୍ୟ ଜଣାଯାଏ । ସାରଳା ଦାସଙ୍କର ଲେଖାରୁ ଜଣାଯାଏ—

"ଅଣ୍ଟାରୁ ଛୁରି ଯେ କାଢ଼ିଲେ ବହନ
ବୃକ୍ଷେକ ଲେଖନ କରି କଲେ ଜୀବନ୍ୟାସ ଦାନ ।"

( ମହାଭାରତ, ମଧ୍ୟପର୍ବ )



ଅବଲୀଳା କ୍ରମେ ଭିତ୍ତି, ପାତ୍ର, ଧଜା, ବସ୍ତ୍ର, ଶିଳ୍ପ, ଅଙ୍କିତ ସମସ୍ତେ ଚିତ୍ରାଙ୍କନ କରି ସେଥିରେ ଜୀବନ୍ୟାସ ଦାନ କରୁଥିଲେ ବା ଉନ୍ମୋଚିତ କରୁଥିଲେ । ରୂପରେ ମୁଦ୍ରା ( Motif ) ଅଙ୍କନ

ଜମନେ କଳଂବର୍ତ୍ତୀ ବା କଳଂ କେଖଣୀ ବ୍ୟବହୃତ ହେଉଥିଲା । ଏହା ଏକ-ପ୍ରକାର ନଡ଼ । ଅଭିଳଷିତାର୍ଥ ଚିନ୍ତାମଣି କୋଷଚନ୍ଦ୍ର ଓ ଅନ୍ୟାନ୍ୟ ଶିଳ୍ପଶାସ୍ତ୍ରର ବର୍ଣ୍ଣନାନୁସାରେ କେ ଇଳକୁ ଗୁଣ୍ଡ କରି ଭାତ ସହିତ ଚକଟି ଖଡ଼ି ଭଳି ତିଆରି କରାଯାଉଥିଲା କିମ୍ବା ଇଟା ଗୁଣ୍ଡକୁ ଗୋବର ସହିତ ଚକଟି ଖଡ଼ି ଭଳି ତିଆରି କରାଯାଉଥିଲା । ତାହାକୁ ଖରାରେ ଶୁଖାଇ ସେଥିରେ ଚିତ୍ରର ପ୍ରାଥମିକ ଖସଡ଼ା (Sketch) ଅଙ୍କନ କରାଯାଉଥିଲା । ଏହା ବ୍ୟତୀତ ନରମ ପଥରରେ ଖଡ଼ି ବା ଶୁଆପଥିଆ ଖଡ଼ି ଓ ଖଡ଼-ଗୋଟାଳର ପ୍ରଚଳନ ଥିଲା ।

ଆମର ଓଷା, ବ୍ରତ ଓ ପର୍ବପର୍ବାଣୀରେ ଯେଉଁସବୁ ଚିତ୍ର କାନ୍ଥରେ କିମ୍ବା ଚଟାଣ ଦେହରେ ଲେଖା ହୁଏ, ସେଥ ବର୍ଣ୍ଣର ଚର୍ଣ୍ଣ ଦ୍ୱାରା ଯେଉଁ ମୁରୁଜ ଲେଖା ହୁଏ ସେଥିରେ ନାନାପ୍ରକାର ପଶୁ ଓ ପକ୍ଷୀର ମୁଦ୍ରା Motif)କୁ ପ୍ରତୀକ ରୂପେ ବ୍ୟବହାର କରାଯାଇ ଥାଏ । ଏହି ପ୍ରତୀକ ଛବି ମଧ୍ୟରେ ଅନ୍ତରର କାମନା ଓ ତଦ୍‌ଜନିତ ନିଷ୍ଠାକୁ ସୁଶୋଭନ ରୂପେ ବ୍ୟକ୍ତ କରାଯାଇ ଥାଏ । ତଅପୋଇ ଜଣେ ସାଧବ ଘରର ଅଳିଅଳକନ୍ୟା ଘଟଣା ଚକ୍ରରେ ସେ ଭାଉଜମାନଙ୍କ ଦ୍ୱାରା ନିଗୃହୀତା ହୋଇ ବନପ୍ରାନ୍ତରେ ଛେଳି ଚରାଉଥିଲା । ଘରମଣି ନାମକ ଛେଳିର ସନ୍ଧାନରେ ଯାଇଁ ମଙ୍ଗଳାଙ୍କ ପୂଜା କ୍ଷେତ୍ରରେ ମିଳିଥିଲା ଓ ମଙ୍ଗଳା ପ୍ରସନ୍ନ ହେବାରୁ ତାର ଭାଇମାନେ ବିଦେଶରୁ ଫେରିଆସିଲେ । ତାର ଦୁଃଖ ଦୂର ହୋଇଗଲା । ଏହି କାହାଣୀର କଥାବସ୍ତୁକୁ ଆଶ୍ରା କରି ଖୁଦୁରୁକୁଣୀ ଓଷା ଗୀତ ପ୍ରଚଳିତ । ଏବେ ମଧ୍ୟ କୁମାରୀମାନେ ଖୁଦୁରୁକୁଣୀ ଓଷା ପୂଜା କରିବା ସମୟରେ ଯେଉଁ ଚିତ୍ରାଙ୍କନ କରିଥାନ୍ତି, ସେଥିରେ ତଅପୋଇ ସହିତ ଘରମଣି ଛେଳିର ଚିତ୍ର ଅଙ୍କିତ ହୋଇ-ଥାଏ । ବୁଧିବାମନ ଓଷାରେ ଓଲଟ ହଂସ, ମାଣବସା ଓଷାରେ ହସ୍ତୀ ଓ ପେଚ୍ଚ, କାର୍ତ୍ତିକ ବ୍ରତରେ ମାର୍କଣ୍ଡେୟ ପୁରାଣର ସାଧ୍ୱୀ କପୋତୀ ଉପାଖ୍ୟାନକୁ ଭିତ୍ତି କରି ଖାପ୍ରା କାପ୍ତି ଓ ଶୁକ୍ଳପକ୍ଷର ନବମୀ ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ବକପଞ୍ଚକରେ ବଗଲା ବଗୁଲୀର ଚିତ୍ର ଅଙ୍କିତ ହେବାର

ମଙ୍ଗଳମୟ ରହିଛି । ଗଞ୍ଜାମ ଓ ପୁରୀ ଜିଲ୍ଲାର କେତେକ ଅଞ୍ଚଳରେ ଦଶ ନାମ ନାମକୁ ଯେଉଁ ଚିତା କାନ୍ଥରେ ଲେଖାଯାଏ ସେଥିରେ ହସ୍ତୀ ଓ ନଗରୁ ପ୍ରଭୃତି ଗୃହପାଳିତ ପଶୁଙ୍କର ଚିତ୍ର ଅଙ୍କନ କରାଯାଇ ଥାଏ । ହସ୍ତୀ ସମୃଦ୍ଧିର ପ୍ରତୀକ । ଏଣୁ ବହୁ ପରିବାରରେ କାନ୍ଥ ଚିତା ମଧ୍ୟରେ ହସ୍ତୀ ଅଙ୍କିତ ହେବାର ଦେଖାଯାଇଥାଏ । ବିବାହ ଆଦି ଶୁଭକର୍ମରେ କଳସ, ଧ୍ୱଜ, କଦଳୀଗଛ ପ୍ରଭୃତି ସହିତ ଯୋଡ଼ିମାଛ ଓ ହସ୍ତୀ ମଧ୍ୟ ଅଙ୍କିତ ହେବାର ପରମ୍ପରା ଅଛି । ଗହ୍ମା ପୂର୍ଣ୍ଣିମାକୁ କେହି କେହି ଲଙ୍ଗଳ-ଧୂଆ ପୂର୍ଣ୍ଣିମା କହନ୍ତି ଓ ବଳଦେବଙ୍କ ଜନ୍ମୋତ୍ସବ ରୂପେ ପାଳନ କରନ୍ତି । ଏହି ଉପଲକ୍ଷରେ ଗୃହର କାନ୍ଥରେ ଜୁଆଳି ଲଙ୍ଗଳ ପ୍ରଭୃତି କୃଷି ଉପକରଣ ସହିତ ଗୋରୁର ଚିତ୍ର ଅଙ୍କିତ ହୋଇଥାଏ । ଉପରୋକ୍ତ ଚିତ୍ରଗୁଡ଼ିକ କେତେକାଂଶରେ ଲୋକପ୍ରିୟ ଚିତ୍ରକର ଭଳି । କେବଳ ନୈତିକ ଯୁକ୍ତିରେ କିମ୍ବା ରୂପ ରଚନାର ସଉଦର୍ଯ୍ୟ ଦୃଷ୍ଟିକୋଣରୁ ନୁହେଁ, ଅତି ମାନସିକ ଓ ଆଧ୍ୟାତ୍ମିକ ଉଦ୍‌ବେଳନରେ ମଧ୍ୟ ଏହି ଚୈତନ୍ୟହୀନ ଜଡ଼ ଚିତ୍ରଗୁଡ଼ିକ ମହିମାମୟ, ରହସ୍ୟମୟ ଓ ଚୈତନ୍ୟମୟ ହୋଇଉଠିଥାଏ ।

ଓଷା ବ୍ରତ, ପର୍ବପର୍ବାଣୀ, ଉତ୍ସବ ଅନୁଷ୍ଠାନ ବ୍ୟତୀତ କେବଳ ସାଧାରଣ ଭାବରେ ଗୃହର ମଣ୍ଡନ ପାଇଁ କାନ୍ଥକୁ ଲିପାପୋଛା କଲାବେଳେ ସେହି ମାଟି ଗୋବର କାନ୍ଥରେ ମଧ୍ୟ ଗୃହିଣୀମାନେ ସିଲ୍‌ହୋଟ ଛବି ଭଳି ନାନାପ୍ରକାର ଚିତ୍ର ଆଙ୍କିଥାଆନ୍ତି । ଏଥି ବ୍ୟତୀତ ପିଠଉ, ହରିତାଳ, ଡ଼ାଉ, ବେଣାଚେର ପ୍ରଭୃତି ଉପକରଣ ଯୋଗେ କାନ୍ଥରେ ଓଲଟ ଶୁଆ, ଯୋଡ଼ି ମାଛ, ଯୋଡ଼ି ଶୁଆ, ଶଙ୍ଖ, ବଣି, ମୟୂର, ପ୍ରଜାପତି, ହରିଣ, ସିଂହଳ, ହାତୀ, ଘୋଡ଼ା ପ୍ରଭୃତି ଅଙ୍କନ କରାଯାଇ ଥାଏ । କାନ୍ଦଣା-ଗୀତରେ ଅଛି—

“କାନ୍ଥେ ରଖ ଶୁଆ ଶାରୀଙ୍କି ଲେଖି
ମୁଁ ମଲେ ପାଇବ ଡାକରେ ଚିଠି



ଏହି ଶତାବ୍ଦୀରୁ ଓଡ଼ିଆଙ୍କର ନିଜସ୍ୱ କଳାବୋଧ ଓ କଳା-କୁଶଳୀ ଦୃଷ୍ଟିକୋଣର ପରିଚୟ ମିଳିବା ଲାଗି ଯଥେଷ୍ଟ ଉପାଦାନ ଅଛି । ଆଦିବାସୀମାନଙ୍କ ସ୍ମୃତିରେ ଯେଉଁ ପ୍ରକାର ପଶୁ ଓ ପକ୍ଷୀଙ୍କ ଛବି ଦେଖାଯାଏ ତାହା ମଧ୍ୟରେ ହାତୀ, ମୟୂର ଓ ଝିଟିପିଟି ପ୍ରଧାନ । ଉତ୍କୀର୍ଣ୍ଣ । ମୟୂରର ବୈଶିଷ୍ଟ୍ୟ କେବଳ ଆଦିବାସୀ ମାନଙ୍କ ସବୁ ଶ୍ରେଣୀର ଲୋକଙ୍କ ମଧ୍ୟରେ ସ୍ଥାନ ପାଇଛି । ଲୋକଚିତ୍ର ବା ଲୋକକଳା ବ୍ୟତୀତ ଶାସ୍ତ୍ରୀୟ କଳା ମଧ୍ୟରେ ବହୁ ପ୍ରାଚୀନ କାଳରୁ ଏହା ବିଶିଷ୍ଟ ସ୍ଥାନ ଗ୍ରହଣ କରିଛି । କଳାସୃଷ୍ଟିରେ ଯେତେବେଳେ ଏକପାଦ ମଧ୍ୟ ସତ୍ୟର ସନ୍ଧାନ ମିଳୁ ନାହିଁ, ସେତେବେଳେ ସତ୍ୟର ପ୍ରତୀକ, ତ୍ରୁଟିହୀନ ଏକାନ୍ତ ଉପକାରୀ ଝିଟିପିଟିକୁ ଆଦିବାସୀମାନେ ପରମ ଶ୍ରଦ୍ଧାର ସହିତ ଅଙ୍କନ କରିଆନ୍ତି । ଏ ସମ୍ବନ୍ଧରେ ପୂର୍ବରୁ ସୂଚନା ମଧ୍ୟ ଦିଆଯାଇଛି । ସହଜରେ ସାଧାରଣ ମଣ୍ଡଳୀ ଓ କୋଠି ଚିତ୍ର ସଜାଇବା ପାଇଁ ମାଙ୍କଡ଼ର ଚିତ୍ର ଦିଆଯାଇଥାଏ । ଏହାର ବୈଶିଷ୍ଟ୍ୟ ଆଦୌ ଉପେକ୍ଷଣୀୟ ନୁହେଁ । ଏହା ଏକତ୍ରିକ ର କଥାର ମଣ୍ଡଳି ଭଳି । ଲତା ମଣ୍ଡଳି ସମଗ୍ର ପୃଥିବୀର ଲୋକ ଶିଳ୍ପର ଦୃଷ୍ଟିକୋଣରେ ହୁଏ । ଏହା କେଉଁଠାରୁ ପ୍ରଥମେ ଜନ୍ମ ସେ ସମ୍ପର୍କରେ ପଣ୍ଡିତମାନଙ୍କ ମଧ୍ୟରେ ମତଭେଦ ରହିଛି ।



ଶିକ୍ଷିତ ପରିବାରର ସ୍ତ୍ରୀଲୋକମାନେ କାନ୍ଥକୁ ନାଗବନ୍ଧ, ମତ୍ସ୍ୟବନ୍ଧ, ଯୋଡ଼ମାଛ, କାମକୁଞ୍ଜର ଓ ନବଗୁଞ୍ଜର ଚିତ୍ର ଦ୍ୱାରା ଚିତ୍ରିତ କରୁଥିଲେ । ଏବେ ଅଧିକରୁ ଅଧିକ ସଭ୍ୟ ହେବାର ଆକର୍ଷଣେ ଆଧୁନିକ ଜୀବନଚର୍ଯ୍ୟା ମଧ୍ୟରେ ତାହା ପ୍ରାୟ ସମ୍ପୂର୍ଣ୍ଣ ଲୋପ ପାଇଗଲାଣି । ନାନା ଉତ୍ସବ ପର୍ବଣିକ ଅବସର ଗୁଡ଼ିକରେ ଏଭଳି ପାରମ୍ପରିକ ପଦ୍ଧତିର ଚିତ୍ର ଲେଖିବା ଦରକାର । ନାଗବନ୍ଧ ଚିତ୍ର ବନ୍ଧ ଚିତ୍ର ଗୁଡ଼ିକର ଧାରା ସମ୍ପୂର୍ଣ୍ଣ ରୂପେ ଦକ୍ଷିଣୀ । ଆମର କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ 'ଚିତ୍ର କାବ୍ୟ' ବନ୍ଧୋଦୟ ଭଳି ଆନ୍ଧ୍ର ପ୍ରଦେଶରେ ଅପ୍ରା କବିଙ୍କ ବନ୍ଧ ଚିତ୍ରଗୁଡ଼ିକ କାଳକ୍ରମେ ଲୋକ ସ୍ମୃତି ମଧ୍ୟରେ ସ୍ଥାନ ପାଇଛି ।

କାମକୁଞ୍ଜର ଚିତ୍ରରେ ନଅଗୋଟି ଯୁବତୀ କନ୍ୟାଙ୍କୁ ହସ୍ତୀ ରୂପରେ ସଜାଇ ତାହା ଉପରେ କାମଦେବ ବସି ରତ୍ନ ମଞ୍ଜରର ସନ୍ଧାନ କରୁଥାନ୍ତି । ଅତ୍ୟନ୍ତ ଚତୁରତାର ସହିତ ଏହା ଅଙ୍କିତ ହୋଇଥାଏ । ସେହିପରି ନବଗୁଞ୍ଜର ଏକ କାଳ୍ପନିକ ଜୀବ । କଥିତ ଅଛି ଏହି ରୂପରେ ଭଗବାନ ଶ୍ରୀକୃଷ୍ଣ ପ୍ରେମଭକ୍ତ ଅର୍ଜୁନଙ୍କୁ ଦେଖା ଦେଇଥିଲେ । ଶୁକ, କୁକୁଟ, ବୃଷଭ, ମନୁଷ୍ୟ, ସିଂହ, ସର୍ପ, ମୟୁର, ବ୍ୟାଘ୍ର, ଅଶ୍ୱ ଓ ମନୁଷ୍ୟର ନଅଗୋଟି ଆକର୍ଷଣୀୟ ଅବୟବକୁ ଏକତ୍ରକରି ଏହି ଚିତ୍ରର ପରିକଳ୍ପନା । ଏହା ସମ୍ପୂର୍ଣ୍ଣ ଓଡ଼ିଶାର ମୌଳିକ ଚିତ୍ର । ପୂର୍ବେ ଓଡ଼ିଶାର ପ୍ରତ୍ୟେକ ଗୃହରେ ଏହା ଅଙ୍କିତ ହେଉଥିଲା । ପୁନଶ୍ଚ ବର୍ଦ୍ଧକୀଗଣ କବାଟ, ଦୁଆରବନ୍ଧ ପ୍ରଭୃତିରେ ନବଗୁଞ୍ଜର ମୂର୍ତ୍ତି ଖୋଦନ କରୁଥିଲେ । ପ୍ରତ୍ୟେକ ଓଡ଼ିଆଣୀ ଝୋଟି, ହରତାଳ, କଳା ଓ ସିନ୍ଦୂର ପ୍ରଭୃତି ସହଜ ଲଭ୍ୟ ବର୍ଣ୍ଣରେ ନବଗୁଞ୍ଜର ଚିତ୍ରଟିଏ ଶ୍ରଦ୍ଧାର ସହିତ ଅଙ୍କନ କରି ନିଜର କଳାନୁରାଗର ପରିଚୟ ଦେଉଥିଲେ । ଅଜନ୍ତାର ମଧ୍ୟ ମନ୍ଦିର, ଇଲୋରାର ତାରଗନ ପରି ଏହାର ପ୍ରସିଦ୍ଧି । ଏପରିକି ସ୍ତ୍ରୀଲୋକମାନେ ନିଜର ଭୁଜଦଣ୍ଡରେ ନବଗୁଞ୍ଜର ଚିତା କୁଟାଇବାକୁ ଏକ ପବିତ୍ର କର୍ମ ରୂପେ ବିଚାର କରୁଥିଲେ, ଚିତାକୁଟା ଗୀତରେ ଅଛି—

ବଡ଼ ଦେଉଳ ଠାକୁର
ଲେଖିଛ ମୋର ବାହୁର
ମଥାପରେ ତାରା ଚନ୍ଦ୍ରମା ଖଞ୍ଜିଛ
ହସ୍ତରେ ନବଗୁଞ୍ଜର ଗୋ ।

(ପଲ୍ଲୀଗୀତି ସଂଚୟନ, ୧ମଭାଗ ପୃଷ୍ଠା ୮୭)

ଯେଉଁପରି ନବଗୁଞ୍ଜର ସଂପୂର୍ଣ୍ଣ ମୌଳିକ ଉତ୍କଳୀୟ କଳ୍ପନା ଉପରେ ଅଙ୍କିତ, ସେହିପରି ଅନ୍ୟଏକ ସମ୍ପଦ ହେଉଛି ଗଣ୍ଡଭେରିବ ପକ୍ଷୀ । ଏହି ପକ୍ଷୀର ଦୁଇଟି ମୁଣ୍ଡ ଓ ଦୁଇଟି ଥଣ୍ଟ । ପାଦ ଗୋଡ଼ଦୁଇଟି ଦୁଇ ଥଣ୍ଟରେ ଓ ଦୁଇ ଗୋଡ଼ରେ ଗୁଡ଼ିଏ ହାତୀଙ୍କୁ ଟେକିଧରି ଗଗନମାର୍ଗରେ ଉଡ଼ୁଥାଏ ଏହି ପକ୍ଷୀ ।

ଦେହର ମଣ୍ଡନ ପାଇଁ ଯେଉଁ ଚିତ୍ରା କୁଟା ଯାଉଥିଲା, ସେଥିରେ ମଧ୍ୟ ପକ୍ଷୀ ଓ ପଶୁ ପ୍ରଭୃତିଙ୍କର ଯଥାଯଥ ସ୍ଥାନ ରହୁଥିଲା । କେଳୁଣୀମାନେ ସେମାନଙ୍କର ନୈପୁଣ୍ୟର ପରିଚୟ ଦେଉଥିଲେ ପ୍ରତ୍ୟେକ ପଶୁ ଓ ପକ୍ଷୀକୁ ଉପଯୁକ୍ତ ଭାବରେ କୁଟାଇବା ଦ୍ୱାରା—

''ହାତରେ କୁଟିବ ଶୁଆ ଶାରୀ ସଙ୍ଗେ ବଣି
ଆମ୍ବଡାଳେ କୋକିଳ ଯେ ରହୁଥିବ ପୁଣି
ଗୋ ଧାଡ଼ି ଧାଡ଼ି
ଫୁଲ ଫୁଟି ପଡ଼ୁଥିବ ଝଡ଼ି ।
ଯାଇ ଯୂଇ ମଲ୍ଲୀ କୁନ୍ଦ ସେବତୀ ମରୁଆ
ଚମ୍ପା ପାଶେ ଥିବେ ଯେ ହରିଣ ବାହୁଟିଆ
ଗୋ, ଓଠ ତଳେ
କୁଟିଦେବ ଲବଙ୍ଗ ମୁକୁଳେ ।"

( ପ: ଗୀ. ସ, ୧ମଭାଗ—ପୃ୪୮ )

ସ୍ଥାୟୀ ଚିତ୍ରା ବ୍ୟକ୍ତିର ଦେହରେ ଯେଉଁସବୁ ଅସ୍ଥାୟୀ ମଣ୍ଡନ ବା ଚିତ୍ରଣ ନୈପୁଣ୍ୟ ପରଂପରାକ୍ରମେ ଚଳି ଆସିଛି, ସେ କ୍ଷେତ୍ରରେ ହରିଣ, ବାହୁଟିଆ, ନବଗୁଞ୍ଜର କମ୍ବା ଯୋଡ଼ଶୁଆ ଚିତ୍ରିତ କରିବା ଅବକାଶ ନ ଥାଏ । ଷଡ଼ୁଷୀ ବେଶକାରୀମାନେ ପଶୁ ପକ୍ଷୀର ଚିତ୍ର ମେଣ୍ଟାଇଥାନ୍ତି ପତ୍ରଙ୍ଗ ମାଧ୍ୟମରେ । ପ୍ରଜାପତି, ଭ୍ରମର, ମକର ପ୍ରଭୃତି ଅଙ୍କନ କରିଥାନ୍ତି । ଆମର ରୀତିଯୁଗୀୟ କାବ୍ୟାବଳୀରେ ଏ ଧରଣର ବେଶବିନ୍ୟାସର ସୁପ୍ରଚୁର ବର୍ଣ୍ଣନା ମିଳେ, ଯଥା—

"କସ୍ତୁରୀ ଭ୍ରମରୀ ଚିତ୍ର ଲେଖନ
ମଦନ ମନ ମୋହନ ବଦନ
କମଳ ମେଳେ ଲଛି ବେଢ଼ିଛନ୍ତି
କୁଆ ନଅା ଅଳି କଳି କରନ୍ତି ସେ
ଏମନ୍ତ ଚିତ୍ତକୁ ଆସେ ଯେ
ଜନନୟନ ବନ୍ଧନକୁ ମଦନ
ଶୃଙ୍ଖଳା ଘେନିଛି କି ସେ ଯେ ।

× × ×

ସ୍କନ୍ଧୁ ଅଗ୍ରୁ ଚୋଞ୍ଚା କାଳ ଖେଳ
ଭୃଙ୍ଗଯୋଡ଼ା ଝରଛଟେଲ୍ ସଜନୀ
ଜନ୍ତୁ ନେଦାନ୍ଧିଲା ଭ ଚିତ୍ରୁନ ଚୋଷ
ମନ ଶେଦର ଅଦ୍ଭୁତ ପଟପେ
ହରପ୍ରିୟ ଅନୁଚର ଯେ
ଶ୍ୟାମ କାମ ଅଙ୍ଗମାନ କୋଳେ ଭଜେ
ଭ୍ରମିତ ହୋଏ ଜାତ ଯେ ।”
( ବିଦଗ୍ଧ ଚିନ୍ତାମଣି—୫୯ ଛାନ୍ଦ )



କାନ୍ଥରେ ଲେଖା ଚିତ୍ର, ଚଟାଣ ଚିତ୍ର, ମୂରୁଜ ଚିତ୍ର, ଘରଦ୍ୱାଣ୍ଡି, ପିଢ଼ା, କଳସ, କୋଠି, ଠାଆଭଙ୍ଗା, ପାନଥାଳିଆ,

ଚନ୍ଦନପେଡ଼ି ପ୍ରଭୃତିର ଚିତ୍ରଣ, କେଶ-ବେଶ ବିନ୍ୟାସ ଓ ଚିତାକୁଟା ପ୍ରଭୃତିରେ ଓଡ଼ିଆର ଗାଆଁଗହଳର ବୋହୂ ଝିଅମାନେ ଯେଉଁ ଚିତ୍ରାଙ୍କନର ପରିଚୟ ଦେଇଥାନ୍ତି ତାହା ପାଇଁ କେବେହେଲେ କୌଣସି ନିପୁଣ ଶିଳ୍ପୀଙ୍କ ଠାରୁ କ'ଣ ପାଠ ଗ୍ରହଣ କରିଥାନ୍ତି ? ଏ ଶିକ୍ଷା ଏକ-ପ୍ରକାର ସେମାନଙ୍କର ସହଜାତ ଗୁଣ । କହିବାକୁ ଗଲେ ଏକପ୍ରକାର ପାରିବାରିକ ତାଲିମ ଓ ସାମାଜିକ ସାଧନା । ପରଂପରା ଅନୁକ୍ରମରେ ନିଜର ମାଆ, ବୁଢ଼ୀମାଆ, ଅପା ଓ ଅନ୍ୟାନ୍ୟ ବୟସ୍କ ମହିଳାମାନଙ୍କର କାର୍ଯ୍ୟକୁ ଦେଖି ଦେଖି ଅଙ୍କନ ନିମନ୍ତେ ପ୍ରେରଣା ପାଇଥାନ୍ତି । ପିଲାଟି-ଦିନରୁ ସେମାନଙ୍କର ଦୃଷ୍ଟିକୋଣ ଓ କଳାକୁଶଳୀ ହାତ ତାଲିମପ୍ରାପ୍ତ ହୋଇଥାଏ । କେବଳ ଆଗ୍ରହ ଓ ପ୍ରଣିକ ଦ୍ୱାରା ଯେପରି ଭାବରେ ହାତୀ, ଛେଳି, ଗୋରୁ, ଘୋଡ଼ା, ହରିଣ, ସିଂହାଳ, ଝିଟିପିଟି, ମାଛ, ଚିଲ, ବଗ, ମୟୂର, ଶୁଆ, ଶାରୀ, କଣି, ପ୍ରଜାପତି, ଭ୍ରମର ପ୍ରଭୃତି ଅଙ୍କନ କରିପାରେ ତାହା ବାସ୍ତବିକ ଲକ୍ଷ୍ୟ କରିବାର କଥା । ପଶୁ ପକ୍ଷୀର ଅବିକଳ ରୂପ ମାତ୍ର ଦୁଇଟା ତିନିଟା ରେଖା ଦ୍ୱାରା ଅଙ୍କନ କରିବା କିପରି କଷ୍ଟସାଧ୍ୟ, ତାହା ଚିତ୍ର ଶିଳ୍ପୀମାନେହିଁ ଜାଣନ୍ତି । ସେଥିରେ ସୁନିପୁଣ ଶିଳ୍ପୀର ଅଙ୍କନ ପଟୁତା ନ ଥାଏ । ଯେଉଁମାନେ ଏଥିରୁ ନିଖୁଣ ତ୍ରୁଟି ଖୋଜିବାକୁ ଇଚ୍ଛା କରିବେ ସେମାନେ ନିଶ୍ଚୟ ନିରାଶ ହେବେ । ଏହା କେବେହେଲେ ବାସ୍ତବଧର୍ମୀ ନୁହେଁ (Realistic) । କିନ୍ତୁ ବାସ୍ତବ ପଶୁ-ପକ୍ଷୀ ଓ କୀଟ-ପତଙ୍ଗ ଯେଉଁ ମୌଳିକ ବୈଶିଷ୍ଟ୍ୟ ଓ ଭଙ୍ଗୀ ଦ୍ୱାରା ପରସ୍ପର ଠାରୁ ପୃଥକ ରୂପେ ଚିହ୍ନି ହୋଇଥାନ୍ତି, ତାହା ଏଠାରେ ସ୍ୱଳ୍ପ ପରିସର ମଧ୍ୟରେ କେବଳ ସୁପରିସ୍ଫୁଟ । ସେଥିପାଇଁ ଏହି ଚିତ୍ରାବଳୀ ବାସ୍ତବଧର୍ମୀ (Realistic) ନ ହେଲେ ମଧ୍ୟ ବାସ୍ତବଧର୍ମୀ (Real) । ଦର୍ଶକ ଏହି ସ୍ୱଳ୍ପ ସାଂକେତିକ ଚିହ୍ନ ମଧ୍ୟରୁ ବାସ୍ତବର ଧାରଣା ଆହରଣ କରିପାରୁଛି । ପଶୁ ଓ ପକ୍ଷୀ ଗୁଡ଼ିକର ମୋଟାମୋଟି ଭାରସାମ୍ୟ (Balance), ଘନତ୍ୱ (Volume) ଓ ଭଙ୍ଗୀ (Gesture) ସମ୍ବନ୍ଧରେ କେବେହେଲେ ଲୋକଚିତ୍ରରେ ଭୁଲ୍ ହୋଇ ନ ଥାଏ । ଏହାର ପ୍ରଥମ ଓ ପ୍ରଧାନ କାରଣ ହେଉଛି ଲୋକଚିତ୍ରର ଶିଳ୍ପୀମାନଙ୍କ ଆପୃତରେ

ଜଟିଳ ଅଙ୍କନ ନୈପୁଣ୍ୟ ନ ଥାଏ । ଏଣୁ ସେମାନେ ପ୍ରଥମଦୃଷ୍ଟି ପ୍ରତ୍ୟେକ ରୂପର ମୌଳିକ ସତ୍ୱଟି ଅନୁଭବ କରନ୍ତି ଓ ତାହା ହସ୍ତ'ର ସହଜ ପ୍ରକାଶ କରି ନିଶ୍ଚିନ୍ତ ହୁଅନ୍ତି । ସେମାନଙ୍କର ଛନ୍ଦ ପ୍ରିୟ ଆଳଂକାରିକ ମନ ଏଥିପାଇଁ ପରଂପରାକ୍ରମେ କେତେକ ମନଗଢ଼ା ରୂପ (Conventional form) ସୃଷ୍ଟି କରିଛି । ଏହା ସେମାନଙ୍କର ସମ୍ପୂର୍ଣ୍ଣ ମଜ୍ଜାଗତ ହୋଇ ରହିଛି । ଏହାକୁ ପରଂପରାଗତ ମୁଦ୍ରା motif) ମଧ୍ୟ କୁହାଯାଇ ଥାଏ । ଏ ସମ୍ପର୍କରେ ଶିଳ୍ପାଚାର୍ଯ୍ୟ ନନ୍ଦଲାଲ ଯଥାର୍ଥରେ କହିଛନ୍ତି—

"Children and untutored Village folk do not depart from simplicity, because they lack detailed anatomical knowledge" — (on Art Page 39 )





# ଆମ ଗାଆଁର ଚିତ୍ର କଳା

କାଳିକାପୁର ଆମ ଗାଁ । ଏହା ମହାନଦୀର ତ୍ରିକୋଣଭୂମିରେ ଅବସ୍ଥିତ । ଏହାର ଗୋଟିଏ ପାର୍ଶ୍ୱରେ ମହାନଦୀ ଓ ଅପର ପାର୍ଶ୍ୱରେ ତାହାର ଶାଖା ଚିତ୍ରୋତ୍ପଳା । ପ୍ରାୟ ପ୍ରତି ବର୍ଷ ବନ୍ୟାରେ ଧୋଇଯାଏ କ୍ଷେତ, ନୋହିଲେ ମରୁଡ଼ି ହୁଏ । ଓଡ଼ିଶାର ଇତିହାସ କିମ୍ବା ଭୂଗୋଳ ବହିର ପୃଷ୍ଠାରେ ମନେରଖିଲା ଭଳି କୌଣସି ସନ୍ତକ ଆମ ଗାଆଁଟି ଏ ଯାଏ ରଖି ପାରିନାହିଁ । କିନ୍ତୁ ମୋର ହୃଦୟମୁକୁରରେ ତାହାର ଅଳିଭ ପ୍ରତିବିମ୍ବିତ କରିପାରିଛି । ମୋର ବାଲ୍ୟ ଓ କୈଶୋରର ଦିନଗୁଡ଼ିକ ବିତିଛି ସେହି ବନ୍ୟା ମରୁଡ଼ି କ୍ଳିଷ୍ଟ ଗ୍ରାମର ନିରକ୍ଷର ମଣିଷମାନଙ୍କ ମଧ୍ୟରେ । ସେହି କେତେ ଚାମାଳ, ଗଅଁଡାଣ୍ଡି, ନଦୀକୂଳ, ଧାନବିଲ ମୋତେ ନୂତନ କଳା ସୃଷ୍ଟିର ଯେତିକି ପ୍ରେରଣା ଦେଇଛି, ମୋର ମାଆ, ଖୁଡ଼ୀ, ଭାଉଜ, ଭଉଣୀ, ବୁଢ଼ୀମାଆ ପ୍ରଭୃତି ତାହାଠାରୁ ନ୍ୟୂନ ଇଙ୍ଗିତ ଦେଇ ନାହାନ୍ତି ! ଆଜି ଜୀବନର ଅର୍ଦ୍ଧେକ ପଥ ଅତିକ୍ରମ କରି ଆସିଲା ପରେ ଯେତେବେଳେ ଆତ୍ମସ୍ଥ ହେଉଛି, ସେତେବେଳେ ମୋ ଆଖି ଆଗରେ ସବୁଠାରୁ ବଡ଼ ଓ ସବୁଠାରୁ ସଂସ୍କୃତି ନିପୁଣ ରୂପେ ଦେଖା ଯାଉଛନ୍ତି ମୋ ପରିବାରର, ମୋ ଗାଆଁର ସେହି ଅନାମଧେୟା ଓଡ଼ିଆଣୀମାନେ । ମୁଠିକଳା ଓ କାଣୀକଳା ମାରି ମାଣିଆ ବନ୍ଧା ବେଢ଼ଣ

କମ୍ବା ଖଇଡ଼ାପାଶ୍ବର କସ୍ତା ପିନ୍ଧି, ଦେହସାରା ନାନାବିଧ ଅଳଙ୍କାରରେ ବିଭୂଷିତା ହୋଇ ମୁଣ୍ଡରେ ଚଉଁରୀଖୁଣ୍ଟି, ଗୋଜକାଠି, କଉଡ଼ିବସା-ପାଟଫଳି ବାନ୍ଧି ଜଙ୍ଘାପାଣ, ଦେହସାରା ଝୋଟି ଚମତ୍କାର ଚିତାକୁଟାଇ, କଳରେ ପାନଖିଲି ଜାକି ସେମାନେ ଦାଣ୍ଡଦ୍ୱାରକୁ କାନ୍ଥରେ ଚିତା ଲେଖିଥିଲେ, କାର୍ତ୍ତିକ ମାସର ବଡ଼ ପଞ୍ଚକରେ ତୁଳସୀମୂଳେ ମୁରୁଜ ପକାଉଥିଲେ, ମାର୍ଗଶୀର ମାସରେ ଧାନଖଳା ଠାରୁ ଆରମ୍ଭ କରି କଣକୋଠାଘର ପର୍ଯ୍ୟନ୍ତ ଲକ୍ଷ୍ମୀପାଦ ଚିତା ଓ ଧାନସଂସାର ଚିତା ଲେଖୁଥିଲେ କିମ୍ବା ଅତିଥି ଆସିଲେ ଠାକୁରଙ୍କ ଘର ମେଲାଘରରେ ଠାଆପିଡ଼ିଆ ଖାଙ୍ଗ କଞ୍ଚନ ଥାଳିରେ ଭୋଜନ ଦ୍ରବ୍ୟ ପରିବେଷଣ କରୁଥିଲେ । ସେ ଦୃଶ୍ୟ ଆଜି ବିରଳ । ତେଲ ଚଣ୍ଡୁଳର ଚିନ୍ତାରେ ପ୍ରତ୍ୟହ ନିପୀଡ଼ିତ ମୋ ଗ୍ରାମର ସେହି ଅନାବିଳ ସାଂସ୍କୃତିକ ପରମ୍ପରା ଆଜି ନାହିଁ । ଅନ୍ୟ ଗ୍ରାମଗୁଡ଼ିକର ଅବସ୍ଥା ମଧ୍ୟ ସେହିପରି । ଆଧୁନିକତାର ନାମରେ ଅତୀତର କଳାପ୍ରବଣ ଉତ୍କଳୀୟ ସଂସ୍କୃତି ଓ ତାର ଆଭିମୁଖ୍ୟ ଆଜି ଅବଲୁପ୍ତ ହେବାକୁ ବସିଲାଣି କହିଲେ ଆଦୌ ଅସତ୍ୟ ହେବ ନାହିଁ ।

କଥାରେ ଅଛି ବାରମାସରେ ତେର ପର୍ବ । ବାସ୍ତବିକ ପ୍ରାୟ ପ୍ରତ୍ୟେକ ମାସରେ ପ୍ରତ୍ୟେକ ଗାଆଁ କୌଣସି ନା କୌଣସି ପର୍ବରେ ମୁଖରିତ ହୁଏ । ଏହି ପର୍ବର ଆରମ୍ଭ ହେଉଛି ମାର୍ଗଶୀର ମାସରୁ । ପାଞ୍ଜିରେ ବର୍ଷାରମ୍ଭ ବୈଶାଖରୁ ହେଉଥିଲେ ମଧ୍ୟ ଗାଆଁଗହଳରେ ଲୋକ ତାହା ସ୍ୱୀକାର କରେ ନାହିଁ । ଯେଉଁ ମାସରେ ସେ କ୍ଷେତର ଲକ୍ଷ୍ମୀକୁ ଘରକୁ ଆଣେ, ସେହି ମାସରେ ମନଖୋଲି ଆନନ୍ଦ ଉତ୍ସବ କରିବାକୁ ବାହାରିପଡ଼େ, ସେହି ମାସକୁ ବର୍ଷର ଆଦ୍ୟ ମାସ ରୂପେ ସମ୍ବୋଧନ କରେ ।

"ଆଦ୍ୟ ମାର୍ଗଶୀର ଶିଶିର ଅନ୍ତ
ଶ୍ରୀକୃଷ୍ଣ ଜାଣନ୍ତି ରାଧିକା ଚିନ୍ତା, ମୋ କହ୍ନୁରେ ।"



ମାର୍ଗଶୀର ମାସର ପ୍ରତି ଗୁରୁବାରରେ ଲକ୍ଷ୍ମୀ ପୂଜା ହୁଏ । ବୁଧବାର ରାତିରୁ ଚିତା ଲେଖା ଆରମ୍ଭ ହୋଇଯାଏ । କୁଳବଧୂମାନେ ଘାଟ କମ୍ବା ତ୍ରବଗା ଲଗାଇ ଆପଣା କଳ୍ପନାର ଶିଅପେଲ ବସନ୍ତ ଦାଣ୍ଡ-ପିଣ୍ଡା, ଅଗଣା, କାନ୍ଥ, ଅମାର ଘର, ଭଣ୍ଡାର ଘର, ଠାକୁର ଘର ଓ ଝଲାରେ ଚିତ୍ରାଙ୍କନ କରି । ଏହା ସେପରି ଏକ ଚିତାଲେଖାର ପର୍ବ ! ସଫା ଅରୁଆ ଚାଉଳର ପିଠୋଉ ଗୋଳି ଡାହାଣ ହାତର ବୁଢ଼ାଆଙ୍ଗୁଠି ଓ ପରଆଙ୍ଗୁଠି ସାହାଯ୍ୟରେ ମନର ରୁଚି ଅନୁସାରେ ଚିତ୍ର ସବୁ କରାଡ଼

ରଅନ୍ତି । ମାଟିଘରର ମାଟିଆ ଚଟାଣ ଉପରେ ଏହି ଚିତା ମନ ପଟେଟଳ ନାଗଫୁଲ ପରି ଝଟକ ଉଠେ—

"ଏ କୋଠା ନପିନ ସେ କୋଠା ନପିନ
ନାଗ ଫୁଲ ଦେଖ ଝୋଟି
ଶୋଇଲି ଶେଯରେ କଥା ନ କହିଲି
ହୃଦୟ ପଡ଼ୁଛି ଫାଟି ।"

ମହାଲକ୍ଷ୍ମୀ ପୂଜାରେ ମୁଖ୍ୟ ଅଂଶ ଗ୍ରହଣ କରିଥାଏ ପଦ୍ମଫୁଲ । ଚାରି ପାଖୁଡ଼ିଆ ଠାରୁ ଆରମ୍ଭ କରି ଆଠ ପାଖୁଡ଼ିଆ, ଷୋଳ ପାଖୁଡ଼ିଆ ଓ ଚଉଷଠୀ ପାଖୁଡ଼ିଆ ପଦ୍ମ ଫୁଲ, ପଦ୍ମକଣ୍ଠ, ପଦ୍ମଲତା, ହାଣ୍ଡି, ଶଙ୍ଖ, ଧାନସିଂଷା, ଧାନକୋଠି ପ୍ରଭୃତି ଅଙ୍କନ କରାଯାଇଥାଏ । ପଦ୍ମ ଲକ୍ଷ୍ମୀଙ୍କର ପଦ୍ମରେ ଶ୍ରଦ୍ଧା ଅଧିକ । ଏଣୁ ପଦ୍ମ ସହିତ ଭିନ୍ନଭିନ୍ନ ଧରଣର ଯୁଗ୍ମ ଲକ୍ଷ୍ମୀପାଦର ଚିତା ମଧ୍ୟ ଲେଖା ହୋଇଥାଏ । ମାର୍ଗଶୀର ମାସରେ ଲକ୍ଷ୍ମୀ ପୂଜା ଅତ୍ୟନ୍ତ ଗୌରବର ସହିତ କରାଯାଉଥିଲେ ମଧ୍ୟ କୁମାର-ପୂର୍ଣ୍ଣିମା ଦିନ ଶାରଦୀୟା ଲକ୍ଷ୍ମୀଙ୍କର ଅର୍ଚ୍ଚନା କରାଯାଇ ଥାଏ । ଶୁକ୍ଳ ବର୍ଣ୍ଣର ଧାନ୍ୟପୂର୍ଣ୍ଣ ମାଣକୁ ଲକ୍ଷ୍ମୀ ରୂପେ ପୂଜା କରାଯାଉଥିବାରୁ ସମଗ୍ର ଗ୍ରାମ ଅଞ୍ଚଳରେ ଏହା ମାଣବସା ନାମରେ ସୁପରିଚିତ ।

ଲକ୍ଷ୍ମୀ ପୂଜା ଭଳି ଆଉ ଗୋଟିଏ ହେଉଛି କାର୍ତ୍ତିକବ୍ରତ । ମୁଖ୍ୟତଃ ଏହା ବିଧବାମାନଙ୍କର ବ୍ରତ । ସେମାନେ ବ୍ରତ ରକ୍ଷା କରି କାର୍ତ୍ତିକ ମାସରେ ମାର୍କଣ୍ଡେୟ ପୁରାଣରେ ସାଧ୍ୱୀ କପୋତି ଉପାଖ୍ୟାନ ପାରାୟଣ କରନ୍ତି । ଏହା ସହିତ ପ୍ରାଚୀନ ଉତ୍କଳର ସତୀଦାହ ପ୍ରଥାର ସନ୍ତକ ବିଦ୍ୟମାନ । ବିଧବାମାନେ ହବିଷ୍ୟ କରନ୍ତି ଓ କହନ୍ତି—

"ସାରୁ କଦଳୀ ଧୂଆମୁଗ ଚେନା ଖାଇବା
ମାସକ ଧରମ ଗୁଳପାଉ ଅଛି ଆଉ କେଉଁଠି ପାଇବା ।"

ନଈକୂଳରେ, ଚଉରମୂଳରେ ବାଲୁକା ନିର୍ମାଣ କରି ମୁରୁଜ ଲେଖା ହୁଏ । କେତେବ କେବେ ଧଳା ଗୁଣ୍ଡ ଚୂନାର ଗୁଣ୍ଡରେ ମୁରୁଜ

ଲେଖାଯାଏ ସତ୍ୟ, କିନ୍ତୁ ପଞ୍ଚୁବର୍ଣ୍ଣି ମୁରୁଜ ଆଙ୍କିବାର ବିଧି ଅଛି । ଝୁଡ଼ଙ୍ଗ ଗୁଣ୍ଡ, ପୋଡ଼ା ନଡ଼ିଆ ଖପରର ଗୁଣ୍ଡ, ହଳଦୀ ଗୁଣ୍ଡ, ଅଁଳା ପତ୍ରର ଗୁଣ୍ଡ ଓ ଫଗୁ ବା ଅବିର ଗୁଣ୍ଡରୁ ଯଥାକ୍ରମେ ଧଳା, କଳା, ହଳଦୀ, ସବୁଜ ଓ ଲାଲ ରଙ୍ଗର ଚୂର୍ଣ୍ଣ ସଂଗୃହୀତ ହୋଇଥାଏ । ସମସ୍ତ ସମୟରେ ଧଳା ଖଡ଼ି ପଥରର ଗୁଣ୍ଡ ମଧ୍ୟ ବ୍ୟବହାର କରାଯାଏ । ମୁରୁଜରେ ଯେତେ କିସମର ଚିତ୍ର ଅଙ୍କନ କରାଯାଏ, ତାହାକୁ ଦେଖିଲେ ଆଖିଖୋସି ହୋଇଯିବ । ସବୁର ମଧ୍ୟରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ଶଂଖ, ଚକ୍ର, ଗଦା, ପଦ୍ମ, କାଂସ୍ରା, କାପ୍ତି, ବଗ, ବଗୁଲି, ମିଡ଼, ଅଁଳାଗଛ ପ୍ରଭୃତି ପ୍ରଧାନ । ଏହାପରି ଦେଖିବାକୁ ଗଲେ ବୁଢ଼ୀଧଇ ଓଷା, ଖୁଦୁରୁକୁଣୀ ଓଷା, ବାଟ ଓଷା, ଖରଖଳ ଓଷା ଓ ଦକ୍ଷିଣା ସଂକ୍ରାନ୍ତି ଇତ୍ୟାଦି ନାନାବିଧ ଧର୍ମମୂଳକ ଉତ୍ସବ ଓ ଆଚରଣ ମଧ୍ୟରେ ଆମ ଗାଆଁର ଝିଅ ବୋହୂ ବୁଢ଼ୀହାଡ଼ ସମସ୍ତେ ନିପୁଣ ଲୋକାର ସାଜନ୍ତି । ସବୁର ମନ ଚହଲି ଯାଏ । ସବୁର କଳ୍ପନାର ପାରିଜାତ ଉଣା ଅଧିକେ ବିକଶିତ ହୁଏ । ଆପଣା ଆପଣା କ୍ଷେତ୍ର ମଧ୍ୟରେ ପରିବେଶକୁ ସମସ୍ତେ ଚିତ୍ର ଓ ମନୋଜ୍ଞ କରିବାକୁ ଯତ୍ନବାନ ହୁଅନ୍ତି । ଚିତା ଲେଖା ଓ ମୁରୁଜ ଲେଖାକୁ ନେଇ ଏକପ୍ରକାର ପ୍ରତିଯୋଗୀତା ମଧ୍ୟ କେଉଁଠି କମିତି ହୋଇଯାଏ ।

ଦଶହରାକୁ ପାର୍ବଣ ଉତ୍ସବ ପରହେଁ । ଘରେ ଘରେ କଳସ ବସେ । ଘଟ ନିକଟରେ ପାଣିକଖାରୁ, ଆଖୁ କମ୍ବା ଅଣଖୁଆ ଖଣ୍ଡେ ବଳି ଦିଆଯାଏ । ସେହି ସମୟରେ ଚଇତ୍ର ଦଶମୀରେ ଓଡ଼ିଶାର ରଜା ବିଜୟ ଯାତ୍ରା ଆରମ୍ଭ କରନ୍ତି । ପ୍ରତ୍ୟେକ ଦ୍ୱାରରେ ଓ କାନ୍ଥରେ ଯେଉଁ ଚିତା ଲେଖାଯାଏ ତାହା ସମ୍ପୂର୍ଣ୍ଣ ଭିନ୍ନ ଧରଣର । ଏଥିରେ ଧଳାରଙ୍ଗ ସହିତ ଡାଳ ଗେରୁ, ହରିତାଳ, କାଇମାଟି ଓ ଟଥର କୋଇଲାର କଳାରଙ୍ଗ ପ୍ରଭୃତି ଗ୍ରାମ୍ୟ ଉପାଦାନ ଗୁଡ଼ିକ ଚିତ୍ରାଙ୍କନ ନିମନ୍ତେ ଅପରିହାର୍ଯ୍ୟ ହୋଇଉଠେ । ନବଗୁଞ୍ଜର, କାମକୁଞ୍ଜର, ଓଲଟଶୁଆ, ମୟୂର, ବଣି, ଶାରି, କଦମ୍ବ ଗଛ, କଖାରୁଆ ଗଛ, ଜୁଇ ଗଛ, ରଥବନ୍ଧ, ନାଗବନ୍ଧ ଓ ପଦ୍ମବନ୍ଧ ପ୍ରଭୃତି ଶାସ୍ତ୍ରୀୟ ଚିତ୍ରଗୁଡ଼ିକ ଅଙ୍କନ କରାଯାଏ । ଏହାର ନିଚ୍ଛକ ବର୍ଣ୍ଣନା ପଲ୍ଲୀ କବି ନନ୍ଦକିଶୋରଙ୍କର ଲେଖାରୁ ମିଳେ, "କନକ-

ଲତା" ଉପନ୍ୟାସର ଅଷ୍ଟମ ପରିଚ୍ଛେଦରେ । ସେ ଲେଖିଛନ୍ତି—"ଏହା-ଛଡ଼ା ଅନ୍ନଳିପି. ବସ୍ତ୍ରଳିପି, ଗୋମୂତ୍ରଛନ୍ଦ, ରଥବନ୍ଧ, ଚକ୍ରବନ୍ଧ ପ୍ରଭୃତି ବିବିଧ ଚିତ୍ରବନ୍ଧ ଦର୍ଶକର ନୟନ ମନ ହରଣ କରୁଅଛି ଏବଂ ଏହି ଉତ୍କଳୀୟ ଖାନଦାନୀ ଘରର ଶିଳ୍ପକଳାଭିରୁଚି ଓ ପ୍ରାଚୀନ ସାହିତ୍ୟ ଚର୍ଚ୍ଚାର ପରିଚୟ ପ୍ରଦାନ କରୁଅଛି । ଦୁଃଖର କଥା, ଏହି ପ୍ରାଚୀନ ରୁଚି ଅଧୁନା କ୍ରମଶଃ ବିଲୟ ପ୍ରାପ୍ତ ହେଉଅଛି ।''



ଏହା ବ୍ୟତୀତ ଆମର ସାମାଜିକ ଉତ୍ସବ ଅନୁଷ୍ଠାନ ଗୁଡ଼ିକରେ ମଧ୍ୟ ଚିତ୍ରାଙ୍କନର ପ୍ରଚଳନ ଅଛି । ବିବାହ, ଉପନୟନ, କର୍ଣ୍ଣବେଧ

ଇତ୍ୟାଦିରେ ଚିତ୍ରାଙ୍କନ କରାଯାଏ । ଶୁଆ, ଶଙ୍ଖ, ବଣି, କଳସ, ସ୍ୱସ୍ତିକ, ଛତ୍ର, ମତ୍ସ୍ୟ, କନ୍ୟାସବାରୀ, ବରପାଲିଙ୍କି, କହ୍ନକପାଶୀ, କଦଳୀଗଛ, ଅଳଂକାର ପ୍ରଭୃତି ଚିତ୍ର ବାହାଘରର ଚିତ୍ର ରୂପେ କାନ୍ଥ ଦେହରେ ଅଙ୍କନ କରାଯାଇଥାଏ । ପଦ୍ମ ଶ୍ରାଦ୍ଧର ମରଣ୍ଡନ ପ୍ରତ୍ୟୁଷରୁ ବୋଇତର ଚିତ୍ର ଅଗଣାରେ ଲେଖାଯାଏ । ଚନ୍ଦନଢେଙ୍କି, ହରହାଣ୍ଡି, ବସିବା ପିଢ଼ା, କୁଲ, ଡାଲା, ଭୋଜନ ସ୍ଥାନ ପ୍ରଭୃତି ପ୍ରସ୍ଥ ଦୈନିକ ସବୁର ଅଲକ୍ଷ୍ୟରେ ଏହି ଚିତ୍ରାଙ୍କନର ସାଧନା ଅତ୍ୟନ୍ତ ବେଦ୍ମାନ ଭାବରେ ଚାଲିଥାଏ । ଆପଣା ଦେହରେ ମଧ୍ୟ ଚିତ୍ର କୁଟାଇବା, ଚୂଆ ଚନ୍ଦନ, କସ୍ତୁରୀ, କୁଙ୍କୁମ ନେଇ ଚିତ୍ର ଲେଖିବା କାର୍ଯ୍ୟ ସମ୍ପର୍କରେ କରାଯାଏ । ଏଥିପାଇଁ ଅଧିକ ଆୟୋଜନ କରିବାକୁ ପଡ଼େ ନାହିଁ । ଅଥଚ ଆମର ସାମାଜିକ ଜୀବନ ଉପରେ ଏହାର ପ୍ରଭାବ ଅମୋଘ । ଏହି ଚିତ୍ର ଲେଖା ଭିତରେହିଁ ଓଡ଼ିଆ ପ୍ରାଣର ସଚିତ୍ର ଚେତନା ଯେଉଁପରି ଫୁଟିଉଠେ ସେହିପରି ଲୋକଗୀତ ମଧ୍ୟ ଫୁଟି ଫୁଟି ପଡ଼େ କେଉଁ କେଉଁ ଦେହାଇ—

"ଘର ଓଳାଇଲି ଝାଇକି ଝୁମା
ପିଢ଼ା ପକାଇଲି ବାଙ୍କେ
ଠାଆ ବାଡ଼ିଦେଲି ଚନ୍ଦ୍ର କଣିଆ
ଭାଇ ଭାତ ଭୁଞ୍ଜି କରନ୍ତୁକେ ।"

ଆମ ଗ୍ରାମର ଏହି କଳା ସାଧନା ମୋର ଦୃଷ୍ଟିକୁ ସରଳ ଓ ରସମୟ କରିଛି । ଏହାର ମଧ୍ୟରୁ ମୁଁ ଆହରଣ କରାଯାଇଛି କେତେ ସାବଲୀଳ ଭାବରେ ମନର କାମନାକୁ ରୂପାୟିତ କରାଯାଇ ପାରେ ଅବଲୀଳା କ୍ରମେ । ତାହା ସୃଷ୍ଟି ହୁଏ ବର୍ଣ୍ଣର ସୀମିତ କ୍ଷେତ୍ର ମଧ୍ୟରେ । ପରବର୍ତ୍ତୀ କାଳରେ କଳା ଓ ଧଳା ବର୍ଣ୍ଣର ନାଟକୀୟ ଅଭିବ୍ୟକ୍ତି ପ୍ରତି ମୋର ଅହେତୁକ ଅସୀମ ଦରଦର ମୂଳରେ ହୁଏତ ଅଛି, ସ୍ୱର୍ଗୀୟା ପିତାମହୀ ପାସୋରୀ ଦେବୀଙ୍କର ଗୋରା ତକତକ ଚମ୍ପାଫୁଲିଆ ଭୁଜଦଣ୍ଡ ଉପରେ ନୀଳବର୍ଣ୍ଣର ଚିତାର ସରୁସରୁ ରେଖା ଓ ନସନ୍ଧି ଅଙ୍ଗୁଳିଚାଳନାରୁ ଅବଲୀଳାକ୍ରମେ ଝରିପଡ଼ୁଥିବା ଝୋଟି, କାନ୍ଥଚିତ୍ର ଓ ମୁରୁଜର ଅକଳ୍ପନୀୟ ପରିପ୍ରକାଶ ।

ଲକ୍ଷ୍ୟ କରନ୍ତୁ ଦେବଦୁର୍ଲ୍ଲଭ ଶରୀର ନିପୁଣ ନିର୍ମାତା ଯେଉଁମାନେ ସେମାନେ ଏହି କର୍ମ ପାଇଁ କାହାର ପୋଷକତା ଉପରେ ନିର୍ଭର କରୁ ନ ଥିଲେ । କଳାବୋଧ ଥିଲା ଜୀବନଯାତ୍ରାର ଅଙ୍ଗ । ବସନ୍ତ ଆସିଲେ ଯେଉଁପରି ଆମ୍ବ ଗଛ ବଉଳିବାକୁ ଆରମ୍ଭ କରେ, ପଳାଶ ଗଛର ଡାଳେ ଡାଳେ ଲକ୍ଷ ମୁକୁଳ ବିକଶିତ ହୋଇଉଠେ, ସେମାନେ ସେହି-ପରି ସ୍ୱତଃସ୍ଫୂର୍ତ୍ତ ହୃଦୟର ଉଦ୍‌ବେଳନକୁ ପ୍ରକାଶ କରୁଥିଲେ ମାତ୍ର । କେଉଁଠି ପାଉଥିଲେ ଚରକ ହସ୍ତରୁ ରେଜାଏ କିମ୍ବା ସୁବାସିତ ପାନଖିଲରୁ ଖଣ୍ଡିଏ । ଯେଉଁଠି ତାହା ମିଳୁ ନ ଥିଲା, ସେଠାରେ ସେମାନେ ଗାଉଥିଲେ—

ଉଁଚ ଉଁଚ ପିଣ୍ଡାରେ ଦେଇଗଲା ଚୋଟି
କି ମାଡ଼ ମାଇଲା ସ୍ୱାମୀ ଫାଟିଗଲା ପିଠି ।”

( ଆକାଶବାଣୀ, କଟକଙ୍କ ସୌଜନ୍ୟରୁ )





# ବିଭିନ୍ନ ପର୍ବପର୍ବାଣୀରେ ଝୋଟି

ମଣିଷ ସଭ୍ୟତାର କ୍ରମିକ ବିକାଶ ସହିତ ସାମାଜିକ ଚଳଣିର ପ୍ରକାଶ ଘଟିଛି । ଏହି ସାମାଜିକ ଚଳଣି ପୁଣି ପରିବାରକେନ୍ଦ୍ରିକ ସହିତ ଦୃଢ଼ଭାବରେ ଯୁକ୍ତ । ସମାଜରେ ବାସ କରିବା ସଙ୍ଗେ ସଙ୍ଗେ ଆପଣା ପରିବାରର ଚଳପ୍ରଚଳ ନିମନ୍ତେ ଗୋଟିଏ ସ୍ଥାନ ନିର୍ଦ୍ଦିଷ୍ଟ ରହିଛି, ତାହାକୁ ପରିଚ୍ଛନ୍ନ ରଖି ଆଖି, ମନ ଓ ରୁଚିକୁ ସେଦିନଲ ଭଳି ସୁନ୍ଦର କରିବା ପାଇଁ ମଣିଷ ସ୍ୱତଃ ଉଦ୍ୟମ କରିଆସିଛି । ଏଣୁ ପରିଚ୍ଛନ୍ନତା ଓ ସୌନ୍ଦର୍ଯ୍ୟାନୁଭୂତି ଝୋଟି ରହିଛି ଜୀବନଧାରାର ଅଙ୍ଗ ସ୍ୱରୂପ । ପ୍ରତ୍ୟେକ ଗୃହିଣୀ ନିଜ ପରିବେଶକୁ ମାଟି ଗୋବର କିମ୍ବା ରଙ୍ଗମାଟି ଦ୍ୱାରା ନିର୍ମଳ ଭାବରେ ଲିପି ପୋଛି ଧୋବଫରଫର ଝୋଟି ଲେଖି ଅମ୍ଳାନ ରୁଚିର ପରିଚୟ ଦେଇଥାନ୍ତି । କିନ୍ତୁ ଏହି ସାଧାରଣ ରୁଚିପୂର୍ଣ୍ଣ ସୁନ୍ଦରତା ଯେତେବେଳେ କୌଣସି ପ୍ରକାର ସାମାଜିକ କାର୍ଯ୍ୟକ୍ରମ କିମ୍ବା ଧର୍ମମୂଳକ ଅନୁଷ୍ଠାନ ସହିତ ଯୁକ୍ତ ହୁଏ, ସେତେବେଳେ ଅନ୍ତରର ସ୍ୱତଃସ୍ଫୂର୍ତ୍ତ

ପୂରଣ ସହିତ ପାରଂପରିକ ଆଚରଣ, କାମନା ଓ କଳ୍ପନାର ଛିଟା ମିଶି ପରିବେଶକୁ ଅଧିକ ନୈସର୍ଗିକ ଓ ମନୋରମ କରେ । ସୁତରାଂ ଆମର ବିଭିନ୍ନ ପର୍ବପର୍ବାଣୀ କିମ୍ବା ଓଷା ବ୍ରତରେ ଲେଖା ଯାଉଥିବା ଗୋଷ୍ଠି, ଗୀତ ଓ ମୂର୍ତ୍ତିକ ଆଧାର ଆଚରଣାତ୍ମକ ତଥ୍ୟଗୁଡ଼ିକ ଲୋକ-ସଂସ୍କୃତିର ସଜୀବ ପ୍ରତୀକ କହିଲେ ଆଦୌ ଅତ୍ୟୁକ୍ତି ହେବ ନାହିଁ ।

କଥାରେ ଅଛି ଓଡ଼ିଆ ଘରେ ବାର ମାସରେ ତେର ପର୍ବ ଅନୁଷ୍ଠିତ ହୁଏ । ଏଥିରୁ ସୂଚିତ ହୁଏ ଯେ ପ୍ରତ୍ୟେକ ମାସରେ ଏକାଧିକ ପର୍ବ ପାଳନର ତଥ୍ୟ ରହିଛି । ଓଡ଼ିଶାର ଭୌଗୋଳିକସ୍ଥିତି ଏପରି, ଗୋଟିଏ ଅଞ୍ଚଳ ସହିତ ଅନ୍ୟ ଅଞ୍ଚଳର ବିଶେଷ ସମ୍ବନ୍ଧ ରହିପାରେ ନାହିଁ । କଟକ ଠାରୁ ସୁନ୍ଦରଗଡ଼ କିମ୍ବା ମୟୂରଭଞ୍ଜ ଠାରୁ କୋରାପୁଟ ମଧ୍ୟରେ ଯେଉଁ ପ୍ରାକୃତିକ ଓଡ଼ିଶା ଅବସ୍ଥିତ ତା'ର ପର୍ବପର୍ବାଣୀ ବ୍ୟତୀତ ମେଦିନୀପୁର, ସିଂହଭୂମି, ରାୟପୁର, ଇଚ୍ଛାପୁର, ଟିକାଲି ଅଞ୍ଚଳରେ ବହୁ ଓଡ଼ିଆ ପରିବାର ଅଛନ୍ତି । ସେମାନଙ୍କ ପର୍ବପର୍ବାଣୀ ସହିତ କାଳ-କ୍ରମେ ବଙ୍ଗଳା, ବିହାର, ମଧ୍ୟପ୍ରଦେଶ ଓ ଆନ୍ଧ୍ରପ୍ରଦେଶର ଚଳଣିଯୁକ୍ତ ହୋଇଗଲଣି । ଆମର ସାଧାରଣ ଜୀବନକୁ ପର୍ଯ୍ୟାଲୋଚନ କଲେ ଜଣାଯାଏ ଯେ ପର୍ବପର୍ବାଣୀ ଓ ଓଷା ବ୍ରତ ମଧ୍ୟରେ ପାର୍ଥକ୍ୟ ରହିଛି । ପ୍ରତ୍ୟେକର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ସମାନ ନୁହେଁ । ପର୍ବପର୍ବାଣୀରେ ସମାଜର ସବୁ ସ୍ତରର ବ୍ୟକ୍ତି ଅଂଶ ଗ୍ରହଣ କରିଥାନ୍ତି । ବନ୍ଧୁ ଓ ଆତ୍ମୀୟମାନଙ୍କୁ ନେଇ ପରିବେଶକୁ ସମବେତ ଭାବେ ଉତ୍ସବମୁଖର କରାଯାଏ । କିନ୍ତୁ ଓଷା କିମ୍ବା ବ୍ରତ ହେଉଛି ସମ୍ପୂର୍ଣ୍ଣ ରୂପେ ବ୍ୟକ୍ତିଗତ କାମନାରୁ ସମ୍ଭୂତ । ଏଥିରେ ବ୍ୟକ୍ତିର ବିଶ୍ୱାସ, ନିଷ୍ଠା, ଆଶା, ଆକାଂକ୍ଷା, ଆନ୍ତରିକତା, ଶୁଦ୍ଧତା ପ୍ରତିଫଳିତ । ଅବଶ୍ୟ ଓଷା ଓ ବ୍ରତ ଗୁଡ଼ିକରେ ଯେପରି ଭାବରେ ଗୋଷ୍ଠିର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ ତାହା ନ ଥାଏ ପର୍ବପର୍ବାଣୀରେ । ଉଦାହରଣ ରୂପେ କୁହାଯାଇ ପାରେ କାର୍ତ୍ତିକମାସରେ ବିଧବାମାନେ ରାଧାଦାମୋଦର ବ୍ରତ କିମ୍ବା ଭାଦ୍ରବ-ମାସରେ କୁମାରୀ କନ୍ୟାମାନେ ଖୁଦୁରୁକୁଣୀ ଓଷା କରନ୍ତି । ସେଥିରେ

ଅଙ୍କିତ ହୋଇଥିବା ଝୋଟି, ତଥା କମ୍ବା ମୁରୁଜର ପ୍ରାଚୁର୍ଯ୍ୟ ଅତ୍ୟନ୍ତ ଦୁର୍ଲଭ ।



ନଦୀ ପର୍ବତର ମରଶା ହେଉ ଆଦିବାସୀ ବହୁଳ ଅଞ୍ଚଳ ଗୁଡ଼ିକରେ ଚଇତପର୍ବ, ପୁଷପୁନି, କରମା, ମାଘେ, ଫଗୁ, ବୀଛଲକ୍ଷ୍ମୀ, ନୂଆଖାଇ ପ୍ରଭୃତି ପର୍ବପର୍ବାଣୀ ଗୁଡ଼ିକର ସର୍ବୋପରି ପ୍ରଚଳନ ରହିଛି, ଉପକୂଳବର୍ତ୍ତୀ ଅଞ୍ଚଳ ଗୁଡ଼ିକରେ ସେହିପରି ଗମ୍ହାପୂର୍ଣ୍ଣିମା, ଦୋଳ-ପୂର୍ଣ୍ଣିମା, କୁମାରପୂର୍ଣ୍ଣିମା, ଋଷିପଞ୍ଚମୀ, ଦକ୍ଷିଣାୟନସଂକ୍ରାନ୍ତି, ରଜ, ରଥଯାତ୍ରା ଦଶହରା, ଦୀପାବଳୀ, ପ୍ରଥମାଷ୍ଟମୀ, ଲକ୍ଷ୍ମୀପୂଜା ପ୍ରଭୃତିର ବ୍ୟାପକ ପ୍ରସାର ଘଟିଛି । ସେଗୁଡ଼ିକ ମଧ୍ୟରେ କେଉଁଠି ଗୋଳା ପିଠଉରେ ଝୋଟି ଲେଖାଯାଏ ତ ଆଉ କେଉଁଠି ଗୁଣ୍ଡ ସାହାଯ୍ୟରେ ମୁରୁଜ ଲେଖାଯାଏ । ପ୍ରତ୍ୟେକର ଠିକଣଣି ବିବରଣୀ ଏଠାରେ ଦେବା ସମ୍ଭବ

ନ୍ତହିଁ । ରଂଗ ଓ ଏପରି କେବଳନ୍ତି ମୁଖ୍ୟ ଚିତ୍ର ସମ୍ଭାରରେ ଆଳେଖନା ଭଗବାନ ଚାନ୍ଦର ସାଧାର ଶୋଭନ କମ୍ପା ଚକଡିଛ ମୁଦ୍ରା ଆସର



ଲୋକ ଜୀବନକୁ ସୁସମୃଦ୍ଧ କରିଛି । ଲୋକ ସଂସ୍କୃତିକୁ ସ୍ରୋତସ୍ୱିନୀ ଭଳି ପ୍ରବାହମାନ କରିଛି ।

ଗହ୍ମ ପୂର୍ଣ୍ଣିମା ଦିନକୁ କୁହାଯାଏ ବଳଦେବ ଜୟନ୍ତୀ । ଏହା ଶ୍ରାବଣ ପୂର୍ଣ୍ଣିମା ନାମରେ ଖ୍ୟାତ । ଶ୍ରାବଣ ମାସର ଶେଷରେ ଲଙ୍ଗଳ-ଆଦି କୃଷିର ଉପକରଣଗୁଡ଼ିକୁ ଏହି ଦିନ କୃଷକ ପରିଷ୍କାର କରି ଆଗାମୀ ବର୍ଷ ନିମନ୍ତେ ସାଇତି ରଖେ । ଏଥିପାଇଁ ଏହାକୁ କେହି କେହି ଲଙ୍ଗଳ-ଧୁଆ ପୂର୍ଣ୍ଣିମା ମଧ୍ୟ କହନ୍ତି । ଏହି ପର୍ବରେ ଗୋପୂଜା ଓ ଗୋ ସମ୍ବର୍ଦ୍ଧନା କରାଯାଏ । ପର୍ବର ବିଶେଷତ୍ୱକୁ ଚିହ୍ନିତ କରିବା ପାଇଁ ଗୃହର କାନ୍ଥରେ ଲଙ୍ଗଳ, ଜୁଆଳି ଆଦି କୃଷି ଉପକରଣ ସହିତ ଗାଈଗୋରୁଙ୍କ ଚିତ୍ର ମଧ୍ୟ ଲେଖା ହେବାର ବିଧି ରହିଛି ।

ସୂର୍ଯ୍ୟଙ୍କର ଦକ୍ଷିଣାୟନ ଘଟେ ଦକ୍ଷିଣା ସଂକ୍ରାନ୍ତି ଦିନ । ଏହି ପର୍ବ ଉପଲକ୍ଷେ ଗୃହର କାନ୍ଥରେ କୋଠି କଟାଯାଏ । କୋଠି ଉପରେ କଳସ ଓ ଧ୍ୱଜ ଏବଂ ନିମ୍ନରେ ଚାବଳ୍ଲ ଅଙ୍କିତ ହୋଇଥାଏ । କୋଠିକୁ ବୃତ୍ତଭାଗରେ ବିଭକ୍ତ କରି ପ୍ରତ୍ୟେକ ଭାଗରେ ଗୋଟିଏ ଗୋଟିଏ ପଦ୍ମ-ଫୁଲର ଚିତ୍ର ଅଙ୍କିତ ହୋଇଥାଏ । ଗୃହର ଆୟୁ ଅଳଂକାର, ଶସ୍ୟପତ୍ର ଓ ଓଳିଆ ଆଦି ଅଙ୍କନ କରି ଶୂନ୍ୟସ୍ଥାନକୁ ପୂରଣ କରି ଦିଆଯାଇଥାଏ । ଚାବଳ୍ଲର ପାଦଦେଶରେ ଗୋରୁ, ଛେଳି, ମେଣ୍ଢା ଆଦି ଗୃହପାଳିତ ପଶୁର ସାଂକେତିକ ଚିତ୍ର ଓ କୋଠିର ଉଭୟ ପାର୍ଶ୍ୱରେ କର୍ଣ୍ଣିକ ଲେଖା ଯାଇଥାଏ । ଏହିପରି ଭାବରେ ଦେଖିବାକୁ ଗଲେ ରକ୍ଷାପଞ୍ଚମୀ ତିଥିରେ ତନ୍ତ୍ର ପ୍ରତିଷ୍ଠାପକ ମହେଶ୍ୱରଙ୍କୁ ସ୍ମରଣ କରି ଗୃହର ଶାନ୍ତିରକ୍ଷା ନିମନ୍ତେ ପ୍ରଧାନ ଦ୍ୱାର ଓ ଦେବମନ୍ଦିରର ମଣ୍ଡନରେ ଚିତ୍ର ଲେଖିବାର ପରଂପରା ଅବଧି ରହିଛି ।

କାର୍ତ୍ତିକ ଅମାବାସ୍ୟାକୁ ଦୀପାବଳୀ ବା ଦୀପଦାନ ପର୍ବ କହନ୍ତି । ଏହିଦିନ ପ୍ରତ୍ୟେକ ପରିବାରରେ ପିତୃପୁରୁଷଙ୍କୁ ସାମୂହିକ ଶ୍ରାଦ୍ଧାର୍ଘ୍ୟ ଅର୍ପଣ କରିବା ବିଧି । ଐତିହାସିକମାନଙ୍କ ମତରେ ଖ୍ରୀଷ୍ଟୀୟ ୪ର୍ଥ ଓ ପଞ୍ଚମ ଶତାବ୍ଦୀ ମଧ୍ୟରେ ମାଠରବଂଶୀୟ ରାଜାମାନେ ଉତ୍କଳରେ ରାଜପଣ କରୁଥିଲେ । ସେମାନେ ସାଧାରଣତଃ ପିତୃଭକ୍ତ ବା ପିତୃଭଟ୍ଟାରକ ପାଦଭକ୍ତ ରୂପେ ପରିଚିତ ଥିବାରୁ ପୂର୍ବପୁରୁଷମାନଙ୍କୁ ଶ୍ରାଦ୍ଧଦେବା ଓ



ସେମାନଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କରିବା ମାଠରମାନଙ୍କ ଦ୍ୱାରା ପ୍ରଚଳିତ । ବର୍ଷର ବିଭିନ୍ନ ସମୟରେ ପିତୃ ପିତାମହଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ ପ୍ରଥାର ପ୍ରଚଳନ ଥିଲେ ମଧ୍ୟ, କାର୍ତ୍ତିକ ଅମାବାସ୍ୟାରେ ଏହା ଏକ ସାର୍ବଜନୀନ ପର୍ବ ଭଳି ଅନୁଷ୍ଠିତ ହୁଏ । ଓଡ଼ିଶାର ଆଦିବାସୀ ସମାଜରେ ବର୍ଷର ଏକ ନିର୍ଦ୍ଦିଷ୍ଟ ସମୟରେ ମାସାଧିକ କାଳବ୍ୟାପି ପ୍ରେତ ପୂଜାର ବ୍ୟବସ୍ଥା ଅଛି । କନ୍ଧ, ଚଣ୍ଡି, କୋୟା, ବଣ୍ଡା ପ୍ରଭୃତି ଆଦିବାସୀ ସମ୍ପ୍ରଦାୟର ଗୋତର ପର୍ବ ଭଳି ଆମର ଏହି ପର୍ଯ୍ୟାଶ୍ରାଦ୍ଧକୁ ଗ୍ରହଣ କରାଯାଇ ପାରିବ । ଏଥିନିମନ୍ତେ ବାଜ୍ରଙ୍ଗାଧାନ (ମାବାର), ଶିତାବାଘ, ବେତକନ୍ଦା ପ୍ରଭୃତି ଲୋଡ଼ା ହୋଇଥାଏ ଓ ତାହାକୁ ଯେନ ଦଶବସ୍ତୁ-ଦେବା, ସପ୍ତଋଷି ଆଦି ଆଦି-ପୁରୁଷଙ୍କୁ ଏକତ୍ର ଶ୍ରାଦ୍ଧ ଓ ପିଣ୍ଡଦାନ

କରାଯାଏ । ଏହି ପର୍ବ ଉପଲକ୍ଷେ ପ୍ରତ୍ୟେକ ଗୃହସ୍ଥର ଅଗଣାରେ ସ୍ୱର୍ଗତ ଆତ୍ମାମାନଙ୍କ ଉଦ୍ଦେଶ୍ୟରେ ସ୍ୱତନ୍ତ୍ର କୋଠିମାନ ଅଙ୍କିତ ହୋଇଥାଏ । ଏହା ବ୍ୟତୀତ ଏହି ରାତିରେ ପ୍ରତ୍ୟେକ ଗୃହିଣୀ ଆପଣା ଅଗଣାରେ ଗୋଟିଏ ଗୋଟିଏ ବୋଇତର ଚିତ୍ର ଅଙ୍କନ କରି, ତାହା ଉପରେ ଘରର ସମସ୍ତ ଆସବାବପତ୍ର ସ୍ଥାପନ କରନ୍ତି । ପ୍ରତ୍ୟୁଷରୁ ସ୍ନାନ ପରେ ଉକ୍ତ ବୋଇତକୁ ବନ୍ଦାପନା କରି ଆସବାବପତ୍ରକୁ ଗୃହକୁ ନେଇଥାନ୍ତି । ଏହା ମଧ୍ୟରେ ପ୍ରାଚୀନ ନୌବାଣିଜ୍ୟର ସଙ୍କେତ ବିଦ୍ୟମାନ୍ ।




ଦୀପାବଳୀ ଭଳି ଦଶହରା ମଧ୍ୟ ଏକ ଜାତୀୟ ପର୍ବ । ଏହାକୁ ସାର୍ବଜନୀନ ଦୁର୍ଗୋତ୍ସବ କୁହାଯାଏ । ଉତ୍ତର ଭାରତରେ ପ୍ରଚଳିତ ନବରାତ୍ରିକ ପୂଜା କିମ୍ବା ବଙ୍ଗଳାରେ ପ୍ରଚଳିତ ପଞ୍ଚରାତ୍ରିକ ପୂଜା ସହିତ

ଜଙ୍ଗଲୀସ୍ଥ ଦୁର୍ଗାପୂଜାର ସମ୍ବନ୍ଧ ଜଣା । ଏଠାରେ ଦେବୀଙ୍କ ଉଦ୍ଦେଶ୍ୟରେ ମୂଳାଷ୍ଟମୀଠାରୁ ଦୁର୍ଗାଷ୍ଟମୀ ବା କନ୍ୟାଶୁକ୍ଳଅଷ୍ଟମୀ ପର୍ଯ୍ୟନ୍ତ ଷୋଳଦିନରେ ଷୋଳପୂଜାର ପ୍ରଧାନ କରାଯାଏ । ମାଟିର କଳସୀ ଠାରୁ ଆରମ୍ଭକରି କାଷ୍ଠ ପର୍ଯ୍ୟନ୍ତ ମୂର୍ତ୍ତିକୁ ଦେବୀରୂପେ ଅର୍ଚ୍ଚନା କରାଯାଏ । ଏହାକୁ ଆଦିମ ସଂସ୍କୃତିର ଚିହ୍ନ କୁହାଯାଇ ପାରିବ । ଦୁର୍ଗାପୂଜାର ମୂଳ ହେଉଛି ବିଲ୍ୱବରଣ, ବିଲ୍ୱବୃକ୍ଷର ପୂଜା, ବିଲ୍ୱଶାଖା ଚ୍ଛେଦନ ପ୍ରଭୃତି ଦେବୀଙ୍କର ଆଗମନ ଉପଲକ୍ଷେ ଏହି ପାର୍ବଣ ସମୟରେ ପ୍ରତ୍ୟେକ ପରିବାରର କାନ୍ଥରେ ଚାଉଳ, ହରିତାଳ, କଳା ଓ ଖଡିପଥରର ରଙ୍ଗକୁ ନେଇ ନାନାବିଧ ବର୍ଣ୍ଣର ଚିତ୍ର ଅଙ୍କନ କରାଯାଏ । ଚିତ୍ରଗୁଡ଼ିକ ମଧ୍ୟରେ ଅଠ କିମ୍ବା ଷୋଳ ପାଖୁଡ଼ାର ପଦ୍ମଫୁଲ, ପଦ୍ମବନ୍ଧ, ନାଗବନ୍ଧ, ରଥବନ୍ଧ, ପୂର୍ଣ୍ଣକୁମ୍ଭ, ରମ୍ଭାତରୁ, ରାମ ରାବଣ ଯୁଦ୍ଧ ଓ ଦୁର୍ଗାମାଧବ ରୂପ ପ୍ରଧାନ । ଚଣ୍ଡୀପୁରାଣ ଅନୁସାରେ ମହାଷ୍ଟମୀରେ ମହାମାରୀ ହୋଇଥିଲା । ସେଥିରେ ଅସୁରକୁଳ ସମ୍ପୂର୍ଣ୍ଣ କ୍ଷୟପ୍ରାପ୍ତ ହୋଇ ଦଶମୀ ଦିନ ଦେବୀଙ୍କ ଦ୍ୱାରା ଶାନ୍ତି ପ୍ରତିଷ୍ଠା ହୋଇଥିଲା । ସେଥିନିମନ୍ତେ ଦଶମୀକୁ ବିଜୟାଦଶମୀ ବା ଦୁଃଶହ ଦଶମୀ କୁହାଯାଇଥାଏ । ଏହି ଶୁଭତିଥିରେ ଓଡ଼ିଶାର ପାଇକ-କୂଳ ଦିଗ୍‌ବିଜୟ ନିମନ୍ତେ ବାହାରୁଥିଲେ । ସେମାନଙ୍କର ସର୍ବଶୁଭ-କାମନା କରି କାନ୍ଥରେ ଦୁର୍ଗାଙ୍କର ଚିତ୍ର ସହିତ ଜଗନ୍ନାଥ (ମାଧବ)ଙ୍କର ଚିତ୍ର ଅଙ୍କିତ ହେଉଥିଲା ।

ଆଦିବାସୀ ବହୁଳ ଓଡ଼ିଶାର ପଶ୍ଚିମାଞ୍ଚଳରେ ସିର୍ଦ୍ଧାକିସାନ୍ ମାନଙ୍କ ମଧ୍ୟରେ ଭାଦ୍ରଶୁକ୍ଳ ଏକାଦଶୀ ଦିନ କରମସାନି ପୂଜା ହୁଏ । ବିହାରର ଛୋଟନାଗପୁର ଓ ମଧ୍ୟପ୍ରଦେଶର ଆଦିବାସୀ ବହୁଳ ଅଞ୍ଚଳରେ ଏହି ପର୍ବର ପ୍ରଚଳନ ଅଛି । ନିର୍ଲ୍ଲେକଜନମା ହେମବନ୍ତ ରାଜାଙ୍କ ଦୁଲଣୀ ଦେବୀ କରମସାନି ହେଉଛନ୍ତି ଦୁର୍ଗାଦେବୀଙ୍କ ପ୍ରତୀକ ଓ ସେ କର୍ମା ନାମକ ଗଛର ଡାଳରେ ଆବିର୍ଭୂତା ହୁଅନ୍ତି । ପାର୍ବଣ ସମୟରେ ଅନ୍ୟ ଯେଉଁ ବ୍ରତ କିମ୍ବା ଓଷା ବା ଉପାସ କରାଯାଏ ତାହା ମଧ୍ୟରେ ମୂଳାଷ୍ଟମୀରେ ଦୁତିବାହନ ଓଷା, ମହାଷ୍ଟମୀରେ ବା ଖାରଷ୍ଟମୀବ୍ରତ ଓ ଦଶହରା ଦିନ



ଶ୍ରୀ ସୋମନାଥ ବ୍ରତ ପ୍ରଧାନ । ଏଗୁଡ଼ିକ ବ୍ୟକ୍ତି କେନ୍ଦ୍ରିକ ହୋଇଥିଲେ ମଧ୍ୟ ପର୍ବଣର ଉତ୍ସବ ଆୟୋଜନ ସହିତ ଏକୀଭୂତ ହୋଇପାରିଛି । ଆଦିବାସୀ ସମାଜରେ ଭୂମିଦେବୀ ଓ ଫସଲଦେବୀଙ୍କ ପୂଜାର ପ୍ରଚଳନ ପରି ଓଡ଼ିଆଘରେ ରଜ ଓ ଲକ୍ଷ୍ମୀପୂଜା ଉଲ୍ଲେଖଯୋଗ୍ୟ ପର୍ବ । ଲକ୍ଷ୍ମୀପୂଜା ସାଧାରଣତଃ କୋଜାଗର ବା କୁମାରପୂର୍ଣ୍ଣିମା ଠାରୁ ଆରମ୍ଭ ହୋଇ ମାର୍ଗଶିର ମାସ ଓ ପୌଷ ମାସର ପର୍ବଗୁଡ଼ିକରେ ପରିପୂର୍ଣ୍ଣତା ଲାଭ କରେ । ଓଡ଼ିଆ ଜୀବନର ସୌନ୍ଦର୍ଯ୍ୟାନୁରାଗ, ଆଶା, ଅଭିଳାଷ, ସୁଖ-ଦୁଃଖର ଅନୁଭୂତି ଲକ୍ଷ୍ମୀପୂଜାର ଝୋଟିର ଅନ୍ତର୍ନିହିତ ଆବେଗ କମ୍ପିତ ରେଖା ମଧ୍ୟରୁ ସରସ ନିର୍ମଳ ଝରଣା ଭଳି ଝରିପଡ଼ୁଥାଏ ।

ଆମର ପାଳିତ ହେଉଥିବା ପର୍ବପର୍ବାଣୀ ଗୁଡିକର ଝୋଟିରୁ ଜଣାପଡ଼ିଯାଏ ଯେ ଲୋକଜୀବନର ସରସ, ସ୍ୱଚ୍ଛନ୍ଦ ଓ ସାବଲୀଳ ଉପଯୋଗ ଓ ଗଭୀର ପ୍ରୀତିପୂର୍ଣ୍ଣ ସୌନ୍ଦର୍ଯ୍ୟଚ୍ଛ । ଉତ୍କଳୀୟର ସାମାଜିକ ପରିବେଶରୁ ସମ୍ପୂର୍ଣ୍ଣ ରୂପେ ନିଃଶେଷିତ ହୋଇ ନାହିଁ ।

( କଟକ, ଆକାଶବାଣୀଙ୍କ ସୌଜନ୍ୟରୁ )



# ପୃଷ୍ଠବନ୍ଧ

ଆମ ଗ୍ରାମାଞ୍ଚଳରୁ ଓ ଜନଜୀବନରୁ ଧୀରେ ଧୀରେ ଲୋପ ପାଇ ଆସୁଥିବା ଅପୂର୍ବ କଳାବୋଧ, ତଥା ରସବୋଧ ସମ୍ବନ୍ଧରେ ପ୍ରବନ୍ଧଗୁଡ଼ିକ ଭିନ୍ନଭିନ୍ନ ସମୟରେ ଲିଖିତ । ସେଥିମଧ୍ୟରୁ କେତୋଟି ଲେଖା ହୋଇଥିଲା କଟକର ଆକାଶବାଣୀଙ୍କର ଅନୁରୋଧରେ । ଯଥା ସମୟରେ ଆକାଶବାଣୀ ଦ୍ୱାରା ପ୍ରଚାରିତ ହୋଇଛି ମଧ୍ୟ । ଓଡ଼ିଶାର ପ୍ରତିଷ୍ଠିତ ପତ୍ରିକାର ସମ୍ପାଦକମାନେ ଆଗ୍ରହର ସହିତ ପ୍ରବନ୍ଧଗୁଡ଼ିକ ସମାଜ, ଆସନ୍ତାକାଲି, ଝଙ୍କାର, ଜୀବନରଙ୍ଗ ପ୍ରଭୃତିର ପୃଷ୍ଠାରେ ସ୍ଥାନ ଦେଇ ଲେଖକକୁ ଧନ୍ୟ କରିଛନ୍ତି ।

ପ୍ରତ୍ୟେକ ପ୍ରବନ୍ଧକୁ ପ୍ରଚୁର ତଥ୍ୟ ଦ୍ୱାରା ପ୍ରତିନିଧିମୂଳକ କରିବାର ଇଚ୍ଛା ଥିଲେ ସୁଦ୍ଧା, ବ୍ୟୟର ସୀମାରେଖା ପ୍ରତି ଧ୍ୟାନ ଦେଇ କାର୍ଯ୍ୟ କରିବାକୁ ହୋଇଛି । ବର୍ତ୍ତମାନ ସମଧର୍ମୀ ପ୍ରବନ୍ଧଭାବେ ସବୁଗୁଡ଼ିକୁ ଗୋଟିଏ ପୁସ୍ତକର ଅନ୍ତର୍ଗତ କରାଯାଇଥିବାରୁ କେତେକ କ୍ଷେତ୍ରରେ ଦ୍ୱିରୁକ୍ତି ଘଟିଛି । ତାହା ହେବା ସ୍ୱାଭାବିକ । ବାରମ୍ବାର ଗୋଟିଏ ଉକ୍ତିକୁ କହିବା, ଶୁଣିବା ଦ୍ୱାରା ତାହା ପ୍ରତି ସ୍ୱତଃ ଆନ୍ତରିକତା ଜନ୍ମିଯାଏ । ଏ କ୍ଷେତ୍ରରେ ଦ୍ୱିରୁକ୍ତିହିଁ ପ୍ରଧାନ ସହାୟକ ହୋଇଛି । ପାଠକମାନେ ବାରମ୍ବାର ପାଠ କରି ଜନଜୀବନ ମଧ୍ୟରେ କଳାବୋଧକୁ ସଜୀବ ଓ ଗତିଶୀଳ କରାଇପାରିଲେ ଲେଖକର ଶ୍ରମ ସଫଳ ହୋଇପାରିବ ।

ବିନୀତ

**ବିନୋଦ ରାଉତରାୟ**





ଏହି ଲେଖକଙ୍କର କେତୋଟି ଉପାଦେୟ ଗ୍ରନ୍ଥ—

୧ । ନଢଚ ନାଟକ

୨ । ସମୀକ୍ଷା ଓ ସିଦ୍ଧାନ୍ତ

୩ । ସ୍ବଳଣ 'ପରେ ଭଳସ୍

୪ । ପ୍ରେମ ଓ ପ୍ରଣୟ

୫ । ଲୋକ କଳା ଓ ଲୋକ ସଂସ୍କୃତି

୬ । ମୋର ଭ୍ରମଣ

୭ । ପଞ୍ଚଶିଖା

୮ । ଶିଶୁ ସାହିତ୍ୟ

୯ । ଶିଶୁ ଶିକ୍ଷା

୧୦ । ଆଲେଖ୍ୟ ଝଗୁର

